ଏଠାରେ ଲକ୍ଷ୍ୟ କରିବାର କଥା ଯେ ଏହି ପାରମ୍ପରିକ ଇମେଜମାନେ ପ୍ରତ୍ୟେକ Emotive ଓ potent । ଏମାନେ ଏକ ନିର୍ଦ୍ଦିଷ୍ଟ ଭାବ ଓ ମୂଲ୍ୟବୋଧର ପରିପୂରକ । ତେଣୁ ଚିତ୍ରାନୁଗତିକ ନହୋଇ ଏମାନେ ପ୍ରକାଶ ଧାରାରେ ନୂତନତା ଆଣି ଦିଅନ୍ତି । ପ୍ରେମ ମଧ୍ୟ ଏକ ଚିରନ୍ତନ ଭାବୋଚ୍ଛ୍ୱାସ । ତେଣୁ ଇମେଜମାନେ ଭାବ ଓ ପ୍ରକାଶଧାରା ମଧ୍ୟରେ ସଙ୍ଗତି ରକ୍ଷା କରନ୍ତି । କ୍ଷୟ ସମ୍ବନ୍ଧୀୟ ଇମେଜ୍ ଗୁଡ଼ିକରେ ଗୁରୁପ୍ରସାଦଙ୍କ ମୌଳିକତା ଉଜ୍ଜ୍ୱଳ । ଇମେଜ ଗୁଡ଼ିକ ମଧ୍ୟରୁ ଅଧିକାଂଶ ସମୟସହ ଓତଃପ୍ରୋତ ଭାବେ ସମ୍ପର୍କିତ ।



# ଗୁରୁପ୍ରସାଦଙ୍କ କବିତା ଓ 'ମେକର ପୋଏଟ୍ରି'

## ଚ୍ଛାରଣୀ ଚରଣ ଦାସ

କବି ଗୁରୁପ୍ରସାଦ ଯେଉଁ ଇଲିଅଟ୍‌ଙ୍କ ଦ୍ୱାରା ଉଦ୍‌ବୁଦ୍ଧ ତାଙ୍କର ଭାଷାରେ କହିବାକୁ ଗଲେ—"Immature poets imitate, mature poets steal; bad poets deface what they take, and good poets make it into some thing better, or at least some thing different . [ Selected Essays, Faber and Faber . ]

ଏଣୁ 'କାଳପୁରୁଷ' ବିଷୟରେ କେଉଁ କଥାଟି ପ୍ରକୃତରେ ପ୍ରଯୁଜ୍ୟ ତାହା ପାଠକେ ନିଜେ ବିଚାର କଲେ ଭଲ ।

ସଚ୍ଚିଦାନନ୍ଦ ରାଉତରାୟ ସ୍ୱଚ୍ଛନ୍ଦତାବାଦ, ପ୍ରଗତିବାଦ ଓ ପ୍ରୟୋଗ-ବାଦର ପତାକା ନେଇ ୧୯୪୭ରେ 'ପାଣ୍ଡୁଲିପି' ପ୍ରକାଶିତ କରି ଓଡ଼ିଆ କାବ୍ୟ କ୍ଷେତ୍ରରେ ନୂତନ ପ୍ରାଣର ସଞ୍ଚାର କରିଥିଲେ ସତ; କିନ୍ତୁ ସେ ଜୀବନାନନ୍ଦ ଦାସଙ୍କ ପ୍ରଭାବରୁ ମୁକ୍ତ ହୋଇପାରିନଥିଲେ । ତେବେ ସେ ଇଲିଅଟ୍ ପ୍ରଭାବିତ ବିଷ୍ଣୁଦେଙ୍କ ଠାରେ ଆତ୍ମ ବିକ୍ରୟ କରି ନଥିଲେ । କବି ଗୁରୁପ୍ରସାଦ ଇଂରେଜୀ ସାହିତ୍ୟର ଛାତ୍ର ଓ ଅଧ୍ୟାପକ ହିସାବରେ ଟି. ଏସ୍. ଇଲିଅଟ୍‌ଙ୍କୁ ଓଡ଼ିଆରେ ପରିବେଷଣ କଲେ କବିତା ମାଧ୍ୟମରେ । 'ନୂତନ କବିତା'ର କେତୋଟି କବିତା ଏବଂ 'କାଳପୁରୁଷ' ପ୍ରକୃଷ୍ଟ ତାଙ୍କର ଚଳିଷ୍ଣୁ ସ୍ୱାକ୍ଷର । ଯେହେତୁ ଏ 'କାଳପୁରୁଷ' "ଓ୍ୱେଷ୍ଟଲେଣ୍ଡ"ର ଏକ ଓଡ଼ିଆ ଏଡ଼ିସନ ମାତ୍ର । ବୈଦେଶିକ ଶୈଳୀର ନୂତନ ପ୍ରୟୋଗ ହେଲେ ହେଁ କବିତାଟି 'ଓ୍ୱେଷ୍ଟଲେଣ୍ଡ'ର ଅନୁକରଣ, ଅନୁସରଣ ଉପରେ ନିର୍ଭରଶୀଳ—ଏଥିରେ Something new କିମ୍ବା Differentର ସ୍ୱର ଅତ୍ୟନ୍ତ କ୍ଷୀଣ ।

ରହିଛି ଅନ୍ୟାନ୍ୟ କବିତା । ଏଗୁଡ଼ିକରେ ଇଲିଅଟ୍‌ଙ୍କ କଥନ ('Poetry should be felt before it is understood')ର ପୁରାପୂରି ସଫଳ ପ୍ରୟୋଗ କରାଯାଇଛି । କବି ଗୁରୁପ୍ରସାଦଙ୍କ କବିତାରେ ବଳିଷ୍ଠ ସଂପ୍ରେଷଣା ବା ପ୍ରେଷଣୀୟତା ( Communi cability ) ରହିଛି । ଏହା କବିତା ବୁଝିବା ଆଗରୁ ଗଭୀର ଭାବବୋଧ ସ୍ତରରେ ପାଠକକୁ ଉପନୀତ କରାଇ ପାରୁଛି ଏବଂ ସେ ବୁଝୁ ବା ନବୁଝୁ, ଗୁରୁପ୍ରସାଦଙ୍କ କବିତା ତାକୁ ନିବିଡ଼ତର ଭାବରେ ଅନୁଭୂତ କରାଇ ପାରୁଛି । ଅତଏବ ଅର୍ଥବୋଧ ପୂର୍ବରୁ ଭାବବୋଧ ଆଡ଼କୁ ଟାଣି ନେବା ଅପୂର୍ବ ଦକ୍ଷତା ଏବଂ ପରଂପରା, ପ୍ରତୀକ, ରୂପକଳ୍ପ, ଆଦ୍ୟରୂପ ( ଆର୍କିଟାଇପ୍ ) ଓ ଦନ୍ତକଥାମାନଙ୍କର ଐନ୍ଦ୍ରଜାଲିକ ବାତାବରଣ ଭିତରେ ଅନ୍ତର୍ନିହିତ ଭାବକୁ ଉଦ୍‌ବୁଦ୍ଧ କରିବା କ୍ଷମତା ହେଲା ତାଙ୍କ କବିତାର ସ୍ୱକୀୟ ବୈଶିଷ୍ଟ୍ୟ । କବିଙ୍କ କାବ୍ୟସତ୍ତାର ବିଶେଷ ନ ହେଲେହେଁ ତାଙ୍କ ଗୋବ୍ୟ ଶୈଳୀରେ ସ୍ୱାତନ୍ତ୍ର୍ୟ ଅବଶ୍ୟ ପରିଲକ୍ଷିତ ହୁଏ ।

ସଚ୍ଚିଦାନନ୍ଦଙ୍କ ରୂପକଳ୍ପର ପ୍ରୟୋଗ ପ୍ରଥମେ କରିଥିଲେହେଁ ଦନ୍ତକଥା, ପୌରାଣିକ ପ୍ରତୀକ, ଖଣ୍ଡିତ ରୂପକଳ୍ପ, ଅସମ୍ବଦ୍ଧତା ଓ ସଂବେଗ-ପାରମ୍ପର୍ଯ୍ୟ ପ୍ରଭୃତିର ପ୍ରୟୋଗ ପ୍ରଥମ କରି ଆମେ ଗୁରୁପ୍ରସାଦଙ୍କଠାରେ ଦେଖିଥାଉଁ । ଏହାଙ୍କପରେ ଫ୍ରାନ୍ସ ପ୍ରତୀକବାଦୀମାନଙ୍କ ବ୍ୟକ୍ତିଗତ ପ୍ରତୀକର ପ୍ରୟୋଗ, ବ୍ୟାକରଣିକ ଉଲ୍ଲଂଘନ, ଯୌନ ପ୍ରତୀକ ପ୍ରଭୃତି ରମାକାନ୍ତଙ୍କଠାରେ ଏବଂ ପରଂପରା, ଆତ୍ମବମ୍ବ, ଲୋକଭାଷା ଓ କାବ୍ୟଭାଷାର ସମୀକରଣ ସୀତାକାନ୍ତଙ୍କଠାରେ ଦୃଷ୍ଟ ହୁଏ । ଏଣୁ ଗୋଟିଏ ଭାବ୍ୟରେ କୁହାଯାଇପାରେ ଯେ 'ନୂତନ କବିତା'ର ପ୍ରବର୍ତ୍ତକ ଗୁରୁପ୍ରସାଦଙ୍କ ସାଧନା ଓ ସିଦ୍ଧି ସୀମିତ ହେଲେହେଁ ତାଙ୍କ ପ୍ରୟାସ ଓ ପ୍ରୟୋଗର ଐତିହାସିକ ମୂଲ୍ୟ ରହିଛି—ଏଥିରେ ସନ୍ଦେହର ଅବକାଶ ନାହିଁ । ଏକ ପକ୍ଷରେ ତାଙ୍କ କାବ୍ୟିକ ପ୍ରୟୋଗ ସଚ୍ଚିଦାନନ୍ଦଙ୍କ ପ୍ରଭାବରୁ ଓଡ଼ିଆ କବିତାକୁ ମୁକ୍ତ କରିଛି ଏବଂ ନୂତନ କବିଗଣଙ୍କୁ ସୃଜନକ୍ଷମ କରିବାରେ ପ୍ରେରଣା ଦେଇ ଆସିଛି ।

'ସମୁଦ୍ରସ୍ନାନ' ପଢ଼ିବା ପରେ କବିଙ୍କ ପ୍ରତିବଦ୍ଧତା ବିଷୟରେ କେତେକ ପ୍ରଶ୍ନ ଉଠେ । ତାଂକ କବିତାରେ ବ୍ୟବହାର୍ଯ୍ୟ ଶବ୍ଦ ଭିତରୁ

'ଗୋଲପ୍ରସନ' ଓ 'ବାଲିଚର'ର ବହୁଳ ପ୍ରୟୋଗ ଦେଖାଯାଏ । ଏହାକୁ ଶବ୍ଦଗତ ପ୍ରତିବଦ୍ଧତା କୁହାଯାଇପାରେ । କିନ୍ତୁ 'କପୋତ କପୋତୀ' 'ଗୋବର ଗଣେଶ' ଓ 'ତ୍ରିସ୍ତବାନ୍ଧବୀ' ପ୍ରଭୃତିକ ରଚନାରେ ଇଲିଏଟ୍‌ଙ୍କ ପରି ଆଧୁନିକ ଜୀବନର ଅନ୍ତଃସାରଶୂନ୍ୟତା, କୃତ୍ରିମତା ଏବଂ ଅସଫଳ ପ୍ରେମଜନିତ ନିରାଶା ପ୍ରତି ପ୍ରତିବଦ୍ଧତା ସୂଚିତ ହୁଏ ।

କେହି କେହି ଆଲୋଚକ ଗୁରୁପ୍ରସାଦଙ୍କ କବିତା ଆଲୋଚନା କଲାବେଳେ ମେଜର ପୋଏଟ୍ କଥା ଉଠାଇଛନ୍ତି । ଓଡ଼ିଶା କିମ୍ବା ଭାରତରେ ବର୍ତ୍ତମାନ ମେଜର ପୋଏଟ୍ କାହାନ୍ତି ? ରବୀନ୍ଦ୍ରନାଥଙ୍କ ପରେ ପରେ ସମନ୍ୱୟ ଓ ସ୍ୱୀକରଣର ମାତ୍ରା ଏତେ କମ୍ ଯେ ଭାରତୀୟ କବି ପାଶ୍ଚାତ୍ୟ ଜଗତକୁ କିଛି ଗୋଟାଏ ନୂଆ କରି ଦେଖାଇ ପାରୁ ନାହିଁ । ଏହା କେବଳ ଅନୁଭୂତିଗତ ଗଭୀରତା, ଅଭିବ୍ୟକ୍ତିଗତ ସଫଳତା ଏବଂ ଅନ୍ତଃଚେତନାର ପରିପକ୍ୱତା ଉପରେ ନିର୍ଭର କରେ । କିନ୍ତୁ ସମସ୍ତେ ଧାଇଁଛନ୍ତି ପଶ୍ଚିମକୁ ମୁହାଁ କରି ଇଲିଅଟ୍ ଓ ପାଉଣ୍ଡଙ୍କୁ ଗୁରୁ ମନେକରି । କେତେକ କବିଙ୍କଠାରେ ସ୍ଥାନେ ସ୍ଥାନେ ନୂତନତ୍ୱ ଦୃଷ୍ଟି ହେଲେହେଁ ପରିପକ୍ୱତା ଆଉରି ଆସିପାରିନାହିଁ । ମୋ ଜାଣିବାରେ ମେଜର ପୋଏଟ୍‌ର ଅଧିକାଂଶ ନିଜର ଏବଂ ଅଧିକାଂଶ ନୂତନ ହେବା ଦରକାର—ଯାର ପ୍ରଭାବ ଯୁଗ ଯୁଗ ଧରି ସ୍ଥିର ନହେଲେ ହେଁ ଅନ୍ତତଃ ସମସାମୟିକ ସ୍ରଷ୍ଟା ଓ ସାହିତ୍ୟମାନଙ୍କ ଉପରେ ପଡ଼ିବା ଆବଶ୍ୟକ । ଯେଉଁ କବି ଅନ୍ୟର ପ୍ରଭାବକୁ ଯେତେଶୀଘ୍ର ଅସ୍ୱୀକାର କରି ସ୍ୱକୀୟ ପ୍ରଭାବ ଅନ୍ୟ ଉପରେ ବିସ୍ତାର କରିବା ଦକ୍ଷତା ହାସଲ କରିପାରିବ ସେ ସେତେ ଶୀଘ୍ର ମେଜର ପୋଏଟର ପ୍ରାକ୍‌ଲକ୍ଷଣ-ଯୁକ୍ତ ମାତ୍ର ହୋଇ ପାରିବ । କିନ୍ତୁ ଏହା ବ୍ୟତୀତ ତାର କେତୋଟି ସ୍ଥିର ମୂଲ୍ୟବୋଧ-ସମ୍ବନ୍ଧୀ କବିତା ମଧ୍ୟ ରହିବା ଆବଶ୍ୟକ — ଯାହା ଦ୍ୱାରା ସଦସ୍ୟ ଓ ସମାଜ ତାଙ୍କୁ ବିସ୍ମୃତ ହେବ-ନାହିଁ । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ମେଜର ପୋଏଟ୍‌ର ସ୍ଥାନ ଏହି ଦୃଷ୍ଟିରୁ ନିର୍ଦ୍ଧାରିତ ହେବା ଉଚିତ ମନେହୁଏ ।

●

# ଗୁରୁପ୍ରସାଦଙ୍କ 'କାଳପୁରୁଷ'

## ବିନୋଦ ବିହାରୀ ପଣ୍ଡା

ଅନେକେ ଗୁରୁପ୍ରସାଦଙ୍କର "କାଳପୁରୁଷ"କୁ ଏଲିୟଟ୍‌ଙ୍କ "ୱେଷ୍ଟଲ୍ୟାଣ୍ଡ" କାବ୍ୟ ସହିତ ତୁଳନା କରନ୍ତି । ଏପ୍ରକାର ତୁଳନା ମଧ୍ୟ ଯଥାର୍ଥ, କାରଣ "ୱେଷ୍ଟଲ୍ୟାଣ୍ଡ"ର ଏପ୍ରିଲ୍ ବର୍ଷା, ଟାଇପିଷ୍ଟ ଗାର୍ଲ, ଫେଲ୍‌ବାସ୍‌ର ମୃତ୍ୟୁ ଭଳି ଅନେକ ଉପାଖ୍ୟାନର ଏକ ଉପରଠାଉରିଆ ବ୍ୟାଖ୍ୟାତ ଅନୁକରଣ ବଡ଼ ଆଖିବୁଜିଆ ଜଣାଯାଏ । "ୱେଷ୍ଟଲ୍ୟାଣ୍ଡ" "ଏପ୍ରିଲ୍ ବର୍ଷା"ରେ ଆରମ୍ଭ ହୋଇ "ଶାନ୍ତି"ରେ ଶେଷ ହେଲାଭଳି 'କାଳପୁରୁଷ' ମଧ୍ୟ ବର୍ଷା ଋତୁରେ ଆରମ୍ଭ ହୋଇ "ଅମୃତଂ ଗମୟ"ରେ ଶେଷ ହୋଇଛି । 'କାଳପୁରୁଷ'ର ତୃତୀୟ ସେକ୍‌ସନ୍ ସହିତ "ୱେଷ୍ଟଲ୍ୟାଣ୍ଡ"ର ଚତୁର୍ଥ ସେକ୍‌ସନ୍ ତୁଳନୀୟ । କିନ୍ତୁ କାବ୍ୟ ଦୁଇଟିର ପରିପ୍ରେକ୍ଷି, ଶୈଳୀ ଓ ପ୍ରଭାବରେ ବହୁତ ଫରକ ରହିଛି । "କାଳପୁରୁଷ"ର ଲେଖକ "ୱେଷ୍ଟଲ୍ୟାଣ୍ଡ"କୁ ଭଲଭାବେ ପଢ଼ିଛନ୍ତି ଓ "ୱେଷ୍ଟଲ୍ୟାଣ୍ଡ" ଦ୍ୱାରା ପ୍ରଭାବିତ ହୋଇ ଏକ ତନ୍ନ୍ଦ ଓଡ଼ିଆ କବିତା ଲେଖିଛନ୍ତି —ଏତିକ "କାଳପୁରୁଷ" କାବ୍ୟ ବିଷୟରେ ନିର୍ଦ୍ଧାର୍ଯ୍ୟଭାବେ କୁହାଯାଇପାରେ । ଏହି କାରଣରୁ "କାଳପୁରୁଷ"କୁ ଅଧମ କାବ୍ୟ ଅଭିହିତ କରି ଉଡ଼ାଇ ଦେବା ଆଉ ଗୋଟାଏ କଥା ଓ ଏପରି ଅଭିହିତ କରିବା ଏକପ୍ରକାର ସୈନିକ ଦେବାଳିଆ ପଣିଆ ଛଡ଼ା ଆଉ କିଛି ନୁହେ । ମନେରଖିବାକୁ ପଡ଼ିବ ଯେ "କାଳପୁରୁଷ" ଗୋଟିଏ ଓଡ଼ିଆ କାବ୍ୟ ଓ "ୱେଷ୍ଟଲ୍ୟାଣ୍ଡ"ର ପ୍ରାକ୍ ପଠନ ବିନା ଏହାକୁ ବୁଝିବାକୁ ଚେଷ୍ଟା କରିବା ସବୁଠାରୁ ଭଲ । ତଥାପି, ଗୁରୁପ୍ରସାଦ "ୱେଷ୍ଟଲ୍ୟାଣ୍ଡ"ର ସାଧାରଣ ଢାଞ୍ଚା ଅନୁକରଣରେ ଏପରି କବିତା ଲେଖିବାର ଗୁରୁତ୍ୱ ଯେ କ'ଣ

ଥାଉଥାଏରେ, ତାହା ଭଲଭାବେ ହୃଦୟଙ୍ଗମ କରିବା ନିତାନ୍ତ ଆବଶ୍ୟକ—ଏପ୍ରକାର ଆଲୋଚନା ମଧ୍ୟ ଓଡ଼ିଆ ସାଂପ୍ରତିକ କାବ୍ୟର ମୂଲ୍ୟାୟନ ପାଇଁ ଅପରିହାର୍ଯ୍ୟ ।

୧୯୨୨ରେ ପ୍ରକାଶିତ "ୱେଷ୍ଟଲାଣ୍ଡ" ଏଲିୟଟ୍‌ଙ୍କୁ ହଠାତ୍ ଏକ ଉତ୍ତୁଙ୍ଗ କବିରେ ପରିଣତ କରିଦେଲା । ପ୍ରାୟ ସେହିବର୍ଷ ଜୟସ୍‌ଙ୍କ "ୟୁଲିସେସ୍", ପ୍ରୁଷ୍ଟଙ୍କ "ସୋଡୋମ୍ ଏଣ୍ଡ୍ ଗୋମୋରା" ୟେଟ୍‌ସଙ୍କ ଗୀତାତ୍ମକ କବିତା-ସମୂହ, ଲରେନସଙ୍କ "ଏରନ୍‌ସ ରଡ୍" ଓ ରିଲକେଙ୍କ "ସୋନେଟ୍ସ ଅଫ୍ ଅର୍ଫିୟସ୍" ବାହାରିଥିଲା—ଏ ସବୁ ଦେଖିଲେ ଗୋଟିଏ ଗୋଟିଏ ଉଚ୍ଚାଙ୍ଗ କୃତି ସନ୍ଧିରେ ୟୁରୋପର ନୂତନ ଚିନ୍ତା ଓ ବୋଧଶୀଳତା ରୂପାୟିତ ହୋଇଛି । 'ୱେଷ୍ଟଲାଣ୍ଡ' କବିତାର ଏପ୍ରକାର ସାହିତ୍ୟିକ ସମାଜ ଗୁରୁପ୍ରସାଦଙ୍କ ଭଳି ଜଣେ ଆଧୁନିକ କବିଙ୍କୁ ଆକର୍ଷକ ଲାଗିଥିବା ସମ୍ଭବ । "ୱେଷ୍ଟଲାଣ୍ଡ" ନୂତନତ୍ୱ ଜଗତରୁ ପରିପୋଷକ ରୂପକମାନଙ୍କୁ ଆହରଣ କରି ଏକ ନୂତନ ବିଷୟବସ୍ତୁର ରାଜ୍ୟ ଭିତରକୁ ପଶିଲା । ଅନ୍ୱେଷଣ ବା ଯାତ୍ରା ହେଉଛି ଏକ ସମୟଜୟୀ ଓ କାଳଜୟୀ ମୂଳଭିତ୍ତିକ ବିଷୟବସ୍ତୁ । ଏହାର ବହୁଳଜ୍ୟୋତିତା ଯେକୌଣସି ଆଧୁନିକ କବିର ଆଗ୍ରହ ଉତ୍ପାଦନ କରିବା ସ୍ୱାଭାବିକ । ଏହି ଅନ୍ୱେଷଣ-ପ୍ରତୀକ ଆଧୁନିକ ମନୁଷ୍ୟର ପରିସ୍ଥିତିକୁ ନିବିଡଭାବେ ଉପସ୍ଥାପନ କରିବାରେ ସକ୍ଷମ । ବାଇବେଲ୍-ପରସ୍ତ ୟୁରୋପୀୟ ମନକୁ ନୂତନତ୍ୱ ଯାହା, ଭାରତୀୟ ବିଶେଷ କରି ଓଡ଼ିଆ ମନକୁ ଭାଗବତ ତାହା । ତେଣୁକରି, "କାଳପୁରୁଷ"ରେ ଉଦ୍ଧବ-କୃଷ୍ଣଙ୍କର ଅବତାରଣା । "ୱେଷ୍ଟଲାଣ୍ଡ" କବିତାର ଔଭର୍ତୀୟ ଗୁଣ ମଧ୍ୟ ଗୁରୁପ୍ରସାଦଙ୍କର ଆଗ୍ରହ ଉତ୍ପାଦନ କରିଥିବା ସମ୍ଭବ । ଅନ୍ୟ ସମସ୍ତ ଚରିତ୍ରମାନଙ୍କର ବୋଧଶୀଳତା ନେଇଆସେ ଟାଇରେସିଆସ୍

ଯେପରିଭାବେ ଯୁଗପତ୍ ପ୍ରଭାବ ଅନୁଭବ କରନ୍ତି, ତାହା ହେଲା ଓଭର୍‌ଲାପ୍ କାବ୍ୟର ଏକ ବିଶେଷଲକ୍ଷଣ । ଗୁରୁପ୍ରସାଦ ଏହି ଓଭର୍‌ଲାପ୍ ଗୁଣ ଉତ୍ପାଦନରେ ଏଲିୟଟଙ୍କ ଭଳି ସଫଳ ବୋଲି ଦାବି ହୋଇପାରି ନାହାନ୍ତି । ଏଲିୟଟଙ୍କ ଟାଇରେସିଆସ ଗୁରୁପ୍ରସାଦଙ୍କ କବିତାର ବୋଧକ (Perceiver)ଠାରୁ ଅଧିକତର ଉତ୍କୃଷ୍ଟ । “କାଳପୁରୁଷ” କବିତାର ବୋଧକ କୌଣସି ଐତିହାସିକ କାଳର ପାଠକର ଅଧିକତର ନିକଟବର୍ତ୍ତୀ ମନେହୁଏ । “ୱେଷ୍ଟଲ୍ୟାଣ୍ଡ” କାବ୍ୟର ସହସାଗ୍ର, ଖଣ୍ଡିତତା, ଓ ଅବଧାରିତ ଅଭିବ୍ୟକ୍ତି ଯାହା କବିତାଟିକୁ ସିନେମାଟିକ ପ୍ରଭାବ ପ୍ରଦାନ କରିପାରେ, “କାଳପୁରୁଷ” କବିତାରେ ସେସବୁ ଏକମନାର ଲିରିକାଲ ଉଚ୍ଛ୍ୱାସରେ ମିଳାଇ ହୋଇଯାଇଥିବା ଭଳି ଦୁର୍ନିବାର ଭାବେ ଅନୁଭୂତ ହୁଏ । ଏହା ହେଲା, “ୱେଷ୍ଟଲ୍ୟାଣ୍ଡ” କାବ୍ୟର ଅବଲମ୍ବନରେ ଲିଖିତ ହୋଇ-ଥିବାଭଳି ଭାବ “କାଳପୁରୁଷ”ର ସମୀକ୍ଷା କରିବା, କିନ୍ତୁ “ୱେଷ୍ଟଲ୍ୟାଣ୍ଡ”ର କାବ୍ୟ କଥା ମନରେ ନ ଧରି ମଧ୍ୟ “କାଳପୁରୁଷ”ର ସମୀକ୍ଷା କରାଯାଇପାରିବ ଓ ବର୍ତ୍ତମାନ ସେପରି ସମୀକ୍ଷାର ସମୟ ମଧ୍ୟ ଆସିଗଲାଣି । “କାଳପୁରୁଷ”ର ବୋଧକ (Perceiver) ହେଲା ପ୍ରଧାନତଃ ଜଣେ ଯୁବକ, ଯେ କି ତା'ର ଦେଢ଼ବର୍ଷ ତଳର ତିକ୍ତ ପ୍ରେମସ୍ମୃତି ଦ୍ୱାରା ବିବ୍ରତ ହୋଇ ବର୍ଷାର ଗୋଟିଏ ମନୋବସ୍ଥା-ପ୍ରଧାନ ଛବି ଆଙ୍କି ଆଙ୍କି ଉମୁର ସ୍ଖଳନ ଓ ଉମୁର ଜୀବନର ମରଣୋତ୍ତର ମୂଲ୍ୟାୟନରୁ କିଛି ଆଶ୍ୱାସନା ପାଇବାକୁ ଚେଷ୍ଟା କରି ଶେଷରେ ରହସ୍ୟ ଓ ଦର୍ଶନମୟ ଧର୍ମ ତତ୍ତ୍ୱର ଆଶ୍ରୟ ଗ୍ରହଣ କରିଛି । “ବୋଧିଦ୍ରୁମ ତଳେ ଅବା ଫାଶିଢିଆ ବରଗଛ ତଳେ/କେହି ଶୋଷ କମିନାହିଁ.......” (ଲାଇନ୍ ୨୯—୩୦)ରେ ବୁଦ୍ଧଦେବ ଓ ଫାଶୀ ଆସାମୀକୁ ଯୋଡ଼ିବାର ମତଲବ ହେଲା, କାମନାର ବିନାଶରେ ଦୁଃଖର ବିନାଶ—

ନଷ୍ଟକୁ ଜାଣି ମଧ୍ୟ ଆତ୍ମ କାମନାର ପରିତୃପ୍ତି ପାଇଁ ସତତ ଚେଷ୍ଟିତ ରହୁଁ ଓ ଏହା! ହେଲା ଆମର ଦୁର୍ଗତି । ବର୍ଷା ଆମକୁ ଏହା ସୂଚିତ କରେ । କୌଣସି ଏକ ସଂସ୍କୃତକାବ୍ୟରେ ମଧ୍ୟ ଅଛି; "ଘନ ରସରେ ଘନ ରସରେ ମୃତକ ପ୍ରାପ୍ତ ହେଲ" । କିନ୍ତୁ "କାଳପୁରୁଷର"ର ବର୍ଷାନ୍ତ ଦୁଇତିଶପୁ ସାର୍ଥ ହୋଇଗଲା ଭଳି ମନେହୁଏ । ଏହା "ସ୍ତନରୁ ସ୍ତନକୁ ଡେଇଁ" "ଗଳି ଗଳି ମେନଗୋଡ଼ ସବୁ" ( ଲାଇନ୍ ୨୫୫ ) ପାର ହୋଇ କେବଳ ପାର ହୋଇ ଯାଉ ନାହିଁ, ବରଂ ତା ସାଥେ କବିତାଟିର କଦା ପ୍ରଶ୍ନାକାସ୍ତ ସନ୍ଧିକୁ ଧୋଇନେଇ ଉଦ୍ଦୀପନର ଅଚ୍ଛିନ୍ନ ପ୍ଳାବନ ବୁହାଇ ଦିଏ ଯେପରି ଅଞ୍ଜଳିର ମକରକେତନଙ୍କୁ ଲଜ୍ଜିତ କରି ବନ୍ଧ୍ୟହେଲଛି । ବର୍ଷାର ଉଦ୍ଦୀପନର ପ୍ଳାବନ ସହିତ ଭାରତର ରୋମାଂଟିକ୍ ଲବ-ଚଞ୍ଚଳତା ଖୁବ୍ ଭଲ ଖାପ ଖାଉଛି । "ହେ ଅକ୍ରୂର, ହେ ଉଦ୍ଧବ" ବୋଲି ସେ ବାରମ୍ବାର ଡାକୁଥାଉଛି, କିନ୍ତୁ କୌଣସି ଅକ୍ରୂର ବା ଉଦ୍ଧବ ଭକ୍ତଙ୍କୁ ତାର ରୋମାଂଟିକ୍ ଭାବପ୍ରବଣତାରୁ ରକ୍ଷା କରିପାରୁ ନାହିଁ । ୩୮୭ତମ ଲାଇନ୍‌ରେ ଉଭୟଲିଙ୍ଗୀ ଇକାର ଉଲ୍ଲେଖ କବିର ଆଇକାରସ୍‌ର ଅସହାୟତାକୁ ଅତି ସ୍ପଷ୍ଟ କରିଦେଉଛି । ଏହି ଉଭୟଲିଙ୍ଗୀ ଇକା ଏଲିୟଟଙ୍କ ଉଭୟଲିଙ୍ଗୀ ଟାଇରେସିଆସ୍ ହୋଇ ପାରୁ ନାହିଁ, ଠିକ୍ ଯେପରି ଭୃଷାପୂ ସେହସନ୍‌ର "ମୁଲ୍‌ଏମ ଚିକ୍‌କଣ ଓ ଗୋଲଗାଲ ଲମ୍ବା ଓ ଚଉଡ଼ା" ରମୁ ଏଲିୟଟଙ୍କ ଫ୍ଲେବାସ୍ ହୋଇପାରୁ ନାହିଁ । ଅତଏବ କବିତା ଶେଷରେ "ମୃତ୍ୟୋର୍ମା ଅମୃତଂ ଗମୟ"ର ଅବତାରଣା ( ଅନ୍ତତଃ ଏହି ଧର୍ମବାକ୍ୟ କାଳେ କବିତାଟିକୁ ଗାମ୍ଭୀର୍ଯ୍ୟ ଭୂଷିତ କରିଦେଇପାରେ !) —ତାହା ପୁଣି "ୱେଷ୍ଟଲାଣ୍ଡ" କାବ୍ୟର "ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ"ର ଏକ ନିକୃଷ୍ଟତର ସମସ୍କନ୍ଧ । ଏହିପରି, "ୱେଷ୍ଟଲାଣ୍ଡ"ଠାରୁ ସ୍ୱତନ୍ତ୍ର ହୋଇ "କାଳପୁରୁଷ"ର ସ୍ୱତନ୍ତ୍ର ସମୀକ୍ଷା କରିବାରେ ଆମେ

ଯେତେ ଚେଷ୍ଟିତ ହେଲେ ମଧ୍ୟ "ଓ୍ୱେଷ୍ଟଲଣ୍ଡ"ର ପ୍ରକରଣ ଦରକାର ପଡ଼ୁଯାଉଛି । ନିଜ କବିତାର ଅଧ୍ୟବୁଡ଼ିକୁ ବୁଝାଇବାପାଇଁ "ଓ୍ୱେଷ୍ଟଲଣ୍ଡ"ର ଟୀକାକୁ ଆମଦାନି କରିବାର ପ୍ରୟାସ ମଧ୍ୟ ସୂଚିତ (Thre 3bare) ଜଣାଯାଉଛି ।



# ଗୁରୁପ୍ରସାଦଙ୍କ ଜୀବନ-ଜିଜ୍ଞାସା

## କୁମୁଦଚନ୍ଦ୍ର ଦାଶ

'କାଳପୁରୁଷ' ଗୁରୁପ୍ରସାଦ ମହାନ୍ତିଙ୍କର ସର୍ବଶ୍ରେଷ୍ଠ କବିତା । ଇଲିୟଟଙ୍କ 'The Waste Land' କବିତାର ଆମୂଳାନ୍ତ ପ୍ରେରଣା ସ୍ୱୀକାର କରିଥିବା ସତ୍ତ୍ୱେ ଓଡ଼ିଆ କବିତାର ଇତିହାସରେ ଏହା ଥିଲା ଏକ ଅପୂର୍ବ ସଂଯୋଜନା । ରାଧାନାଥଙ୍କ 'ଚିଲିକା' କିମ୍ବା 'ମହାଯାତ୍ରା' ପରି ନ ହେଲେ ବି ଜଗନ୍ନାଥ ଦାସଙ୍କ 'ଭାଗବତ' କିମ୍ବା ଗଙ୍ଗାଧର ମେହେରଙ୍କ 'ପ୍ରଣୟବଲ୍ଲରୀ' ପରି 'କାଳପୁରୁଷ'କୁ ସମ୍ମାନ ଦେବାରେ କୌଣସି କୁଣ୍ଠା ରଖିବା ଉଚିତ ନୁହେଁ । 'The Waste Land' ପରି ବିଂଶ ଶତାବ୍ଦୀର ଅବକ୍ଷୟଗ୍ରସ୍ତ ଆଧୁନିକ ଜୀବନର ଏକ କାବ୍ୟିକ ଉପଲବ୍ଧି ଓ ଉପସ୍ଥାପନାର ପ୍ରଚେଷ୍ଟା ହିଁ 'କାଳପୁରୁଷ'ର ବୈଶିଷ୍ଟ୍ୟ । ଇଲିୟଟଙ୍କ ପରି ଗୁରୁପ୍ରସାଦ ମଧ୍ୟ କବିତାଟିର ଅନ୍ତିମତମ ସ୍ତରରେ ମୁକ୍ତିନଷ୍ଟ ଅମୃତର ଆକାଂକ୍ଷା ବା ଅଭୀପ୍ସା ପୋଷଣ କରିଛନ୍ତି ।

ଏ ଗ୍ରହର ନଷ୍ଟ ଯାହା ଆଜ ଯଦି ଅନ୍ଧାରରୁ
ଏ ଗ୍ରହର ନଷ୍ଟ ଯାହା ଆଜ ଯଦି ମରଣରୁ
ଏ ଗ୍ରହର ନଷ୍ଟ ଯାହା ଆଜ ଯଦି ଅସତରୁ

ମୃତ୍ୟୁ ର୍ମାଂ
ଅସତୋ ମାଂ
ତମସେ ମାଂ
ମୃତ୍ୟୁ ର୍ମାଂ··· ମୃତ୍ୟୁ ର୍ମାଂ··· ମୃତ୍ୟୁ ର୍ମାଂ···
ଅମୃତଂ ଗମୟ । ( ସମୁଦ୍ରସ୍ନାନ, ଲର୍କ୍ କୁକ୍ସ, ପୃ.୫୦ )

'କାଳପୁରୁଷର'ର ଅନ୍ତିମତମ ଛନ୍ଦରେ ଉଚ୍ଚାରିତ ଏହି ମୁକ୍ତି ଓ ଅମୃତ ଅଭୀପ୍‌ସା କବିଙ୍କର ପରବର୍ତ୍ତୀ କବିତା 'ଅକ୍ରୁର ଉବାଚ'ର ମୁଖ୍ୟ ଭାବସତ୍ତା ( ଥିମ୍ ) କହିଲେ ଭୁଲ ହେବ ନାହିଁ । ବସ୍ତୁତଃ 'ଅକ୍ରୁର ଉବାଚ'ର ସୃଷ୍ଟି ପ୍ରେରଣାଗତ-କାରଣ, ଏହି "କାଳପୁରୁଷ" କବିତାରେ ହିଁ ଅନୁସନ୍ଧେୟ । 'କାଳପୁରୁଷ'ର ଅନ୍ତିମ ଛନ୍ଦ ଗୁଡ଼ିକରେ, ଅନୁପ୍ରମିତ ବ୍ୟବଧାନରେ ଅକ୍ରୁର ଓ ଉଦ୍ଧବଙ୍କର ଉଲ୍ଲେଖ ବାରମ୍ବାର ମିଳିଥାଏ । ଯଥା —

ହେ ଅକ୍ରୁର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ କ୍ଷଣିକା ହୁଅ ପିଠିରେ ମୋ ଭୁମ ପରି ବୋଝ
ଅନ୍ଧାରରେ ପାଦ ଯେବେ ଛନ୍ଦିହୁଏ ଗୁଳ୍ମକଙ୍କ ନଈ
ଶୁଖେ ଶୁଷ୍କ ଭଙ୍ଗେ ହାଡ଼ ବଢ଼ିଉଠେ ଶୋଷ । (ସମୁଦ୍ରସ୍ନାନ ପୃ୩୯)

ବା

ହେ ଅକ୍ରୁର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ କ୍ଷଣିକା ହୁଅ ପିଠିରେ ମୋ ଭୁମପରି ବୋଝ
ମୁଁ ଯିବି ତୁମରି ଘର ତାର ଖୋଜ କହ ଖୋଜ
ଖୋଜ ଖୋଜ ଝରଣାର ସୁଅ
ମୁଁ ଯିବି ତୁମରି ଘର ଖୋଜ ମୋର ପିତାମାତା
ନିର୍ମଳ ନଈରେ ଖୋଜ ଅରୁନ୍ଧତୀ ତାରାର ଆଲୁଅ
( ସମୁଦ୍ରସ୍ନାନ-ପୃ.୪୫ )

ଏତିକି ନୁହେଁ, ଏହା ବ୍ୟତୀତ 'କାଳପୁରୁଷ'ର ୨୨୧-୨୪, ୩୪୪-୩୪୭ ପ୍ରଭୃତି ପଙ୍‌କ୍ତିମାନଙ୍କରେ ମଧ୍ୟ ଏପରି ଉଲ୍ଲେଖ ମିଳିଥାଏ । ନଷ୍ଟଗ୍ରନ୍ଥ ଭିତରେ ମୁକ୍ତି ସ୍ୱପ୍ନ ବା ଅମୃତର ଆକାଙ୍‌କ୍ଷାର ଏକ ଏକ ପୌରାଣିକ ପ୍ରତୀକ ହୋଇ ଦେଖା-ଦେଇଛନ୍ତି ଅକ୍ରୁର ଓ ଉଦ୍ଧବ । ଅକ୍ରୁର ଏବଂ ଉଦ୍ଧବ ଶ୍ରୀମଦ୍ଭାଗବତର ଦୁଇଟି ଚରିତ୍ର ଏବଂ ଉଜ୍ଜ୍ୱଳ ଜୀବନର ଆଦର୍ଶ । ସେଥି ମଧ୍ୟରୁ ଅକ୍ରୁର ଚରିତ୍ରର ପ୍ରତୀକ-ଧାରଣାର ବସ୍ତୁତରେ 'ଅକ୍ରୁର ଉବାଚ' କବିତାର ଜନ୍ମ ବୋଲି କୁହାଯାଇପାରେ । ଏବଂ ଏହି କବିତାରେ ଦେହାତୀତ ମୁକ୍ତିର ବାସନା ସ୍ପଷ୍ଟତର ଓ ବସ୍ତୁତତର ଅଭିବ୍ୟକ୍ତି ଲଭ କରିଛି । ମଥୁରାରୁ ଗୋପ — ଏକ ଯାତ୍ରାର ରୂପକ ଭିତରେ କବିତାଟିର ପରିକଳ୍ପନା । ଅକ୍ରୁର ଯାଉଛନ୍ତି ଶ୍ରୀକୃଷ୍ଣଙ୍କ ପାଖକୁ । ଜୀବାତ୍ମାର ପରମାତ୍ମାଙ୍କ ଉଦ୍ଦେଶ୍ୟରେ ଅଭିଯାତ୍ରା । କୃଷ୍ଣ-ଦର୍ଶନ ପୂର୍ବରୁ ଅକ୍ରୁର ମାନସର ଆଧ୍ୟାତ୍ମିକ ବ୍ୟାକୁଳତାର ଚିତ୍ର ଅଙ୍କନ କରିଛନ୍ତି କବି । ତାହା ଆଧୁନିକ ମଣିଷର, ହୋଇପାରେ ମଧ୍ୟ ସ୍ୱୟଂ କବିଙ୍କର । ଅକ୍ରୁରର ପ୍ରାର୍ଥନା କବିଙ୍କର ଭାଷାରେ —

> ''ମହାପ୍ରଭୁ ମୁକ୍ତି ଦିଅ ଏହି ଯାତ୍ରା ଶୁଭ ହେଉ ତୁମର ଦୟାରୁ
> ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା ଏ ଦେହରୁ
> ତୁମର ସଂସାର ଡେଇଁ
> ବହୁତ ବହୁତ କ୍ଳାନ୍ତ ପୁନରୁକ୍ତି ଏ ଆତ୍ମାର
> ଆଜି ତୁମ ଦୟା କ୍ଷମା କରୁଣାର ସମୁଦ୍ର କୂଳରୁ''

(ସମୁଦ୍ରସ୍ନାନ-ପୃଷ୍ଠା ୪)

ମନେ ହେବ ଏହି ଆଧ୍ୟାତ୍ମ ଚେତନା କି଼ଁ ଗୁରୁପ୍ରସାଦଙ୍କ ଜୀବନ ଜିଜ୍ଞାସାର ପ୍ରକୃତ ଦିଗ । କିନ୍ତୁ ତାଙ୍କର 'ସମୁଦ୍ରସ୍ନାନ' କବିତା

ସଂକଳନରେ ମାତ୍ର ଏହି ଦୁଇଟି କବିତାରେ ହିଁ ତାଙ୍କ ଜୀବନ-ଜିଜ୍ଞାସାର ଏହି ଦିଗ, ଭାବ ବା ଚେତନା ବିଶେଷ ପ୍ରତିନିଧିତ୍ୱ ଲାଭ କରିଛି । ଘଟଣାଖ୍ୟାନାତ୍ମକ ଦୃଷ୍ଟିକୋଣରୁ ଗୌଣ ପ୍ରତିପାଦିତ ହୋଇଥିବା ଏହି ଚେତନା ତାଙ୍କ କବିତାର ସାମଗ୍ରିକ ଜୀବନ-ଜିଜ୍ଞାସା ସମ୍ପର୍କରେ ଅସତ୍ୟ ବୋଲି ମନେ ହୁଏନାହିଁ । ସ୍ୱର୍ଗ ଆଡ଼କୁ ତାଙ୍କର ଆଖିର ପ୍ରବଣତା ଖୁବ୍ କମ୍ । ସେ ଆକାଶର କବି ନୁହନ୍ତି, କି ଉକ୍ତ କାବ୍ୟ ସଂକଳନକୁ 'ସମୁଦ୍ରସ୍ନାନ' ବୋଲି ନାଁ ଦେଇଥିଲେ ମଧ୍ୟ ସେ ସମୁଦ୍ର ସୀତାକାନ୍ତଙ୍କ 'ସମୁଦ୍ର' ନୁହେଁ, ଏବଂ ଗୁରୁପ୍ରସାଦ ସମୁଦ୍ରର କବି ମଧ୍ୟ ନୁହନ୍ତି । ସେ ମୁଖ୍ୟତଃ ପୃଥିବୀର କବି !

୮

ଜନ୍ମ ଓ ମୃତ୍ୟୁର ସୀମା ମଧ୍ୟରେ ଆବଦ୍ଧ ଏହି ପୃଥିବୀର ଜୀବନକୁ କେନ୍ଦ୍ର କରି ଗଢି ଉଠିଛି ଗୁରୁପ୍ରସାଦଙ୍କ ଜୀବନ-ଜିଜ୍ଞାସା । ଏହି ପୃଥିବୀ ବାହିତାର ଦୁଇଟି କାରଣ ତାଙ୍କ କବିତା ଭିତରୁ ସନ୍ଧାନ କରାଯାଇପାରେ । ସେ ମୁକ୍ତିର ସ୍ୱପ୍ନ ଦୃଢ଼ ଭାବରେ ଦେଖି ପାରିନାହାନ୍ତି; କାରଣ ଏହି ପୃଥିବୀ ପ୍ରତି ତାଙ୍କର ଆସକ୍ତି, କାମନା ଓ ତୃଷ୍ଣା ତଥାପି ଶେଷ ହୋଇନାହିଁ । 'କାଳପୁରୁଷ'ରେ ରହିଛି ଏହାର ସୁସ୍ପଷ୍ଟ ଉଚ୍ଚାରଣ ।

ହେଲେ ଶୋଷ କମି ନାହିଁ ସରିନାହିଁ ଲୋପ ପାଇ ନାହିଁ
ହେଲେ ମରି ଯାଇନାହିଁ ନିସ୍ତୁଟିଆ କଠିନ ଗଳିରେ
ଆଜି ଚେତିଣୁ ଗତିହୀନ ସ୍ରୋତ ଏକ ବର୍ତ୍ତମାନ ଧରି
ଗଳି ପରେ ଗଳି ଡେଇଁ କୁଡ କୁଡ଼ ବାଲି ଡେଇଁ ଡେଇଁ
ମୁଁ ଆଜି ଗୁଲାଚ ଖୋଜି ତାରି ଆଜି ଜହ୍ନ ରାତି
ଚୁପ୍ ଚୁପ୍ ପବନର କଥା

କୁଢ଼ କୁଢ଼ ଅଙ୍ଗାର ଓ ଅଙ୍ଗାରର ସୁଡ଼ଙ୍ଗ ସେଇଠାରେ
ଆଇସ୍‌କ୍ରୀମ୍ ଲେମନେଡ୍ ଟଙ୍କଣାର ନିରୁକ୍ତ ମମତା ।
( ସମୁଦ୍ରସ୍ନାନ ପୃ୩୯ )

ପୃଥିବୀ-ବାଦିତାର ବିଶ୍ୱାସ କାରଣ ହେଉଛି ସ୍ୱର୍ଗଆଡ଼କୁ ବିଫଳତା । ମନେ ହୁଏ ସତେ ଯେପରି ଗୁରୁପ୍ରସାଦ ଶଙ୍କରାଚାର୍ଯ୍ୟଙ୍କ 'ମୋହ ମୁଦ୍‌ଗର'ର "ପୁନରପି ଜନନମ୍ ପୁନରପି ମରଣମ୍ ପୁନରପି ଜନନୀ ଜଠରେ ଶୟନମ୍"ର ନିରଙ୍କୁଶ ଦୁଃଖବାଦିତାରେ ବିଶ୍ୱାସୀ । ତାଙ୍କର ଆଠନମ୍ବର ସନେଟ୍‌ର ଶେଷ ପଙ୍‌କ୍ତିଦ୍ୱୟର ଉଚ୍ଚାରଣ ହେଉଛି —

"ଖଣ୍ଡିତ ଆକାଶ ଜମି ମରଣ ବା ଜୀବନର ମୁକ୍ତି
ମୁଁ କରୁଛି ଅନ୍ୱେଷଣ ପାଉନାହିଁ ସନ୍ଧାନ କାହାର" ।
( ସମୁଦ୍ରସ୍ନାନ ପୃ୬୭ )

ଜୀବନରୁ ମୁକ୍ତି ନାହିଁ, ନାହିଁ ମଧ୍ୟ ମରଣରୁ ମୁକ୍ତି । ତେଣୁ ବନ୍ଧନ ଏବଂ ତେଣୁ ଯନ୍ତ୍ରଣା । ଏବଂ ତାହାହିଁ ବୋଧହୁଏ ଜୀବନ-ସ୍ଥିତିର ଯଥାର୍ଥ ପରିଚୟ । ଗୁରୁପ୍ରସାଦଙ୍କ କବିତାରେ 'ଚିରନ୍ତନ ଅନସ୍ତିତ୍ୱ'ର ଏକ ଧାରଣା ଅଛି ବୋଧହୁଏ । ସାମ୍ପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ ଗୁରୁପ୍ରସାଦ ଓ ରମାକାନ୍ତ ଉଭୟଙ୍କଠାରେ ଏହି 'ଚିରନ୍ତନ ଅନସ୍ତିତ୍ୱ'ର ପ୍ରଶ୍ନ ଦେଖା ଦେଇଛି । ଉଭୟ କ୍ଷେତ୍ରରେ ବିଫଳତା ହିଁ ପୁରସ୍କାର ହେବାର କଥା ହୋଇଛି । ଭିନ୍ନ ଭିନ୍ନ ସ୍ୱର ଶୈଳୀରେ ସେହି ଦୁଃଖାନୁଭୂତିକୁ କବିଦ୍ୱୟ ଉପସ୍ଥାପିତ କରିଛନ୍ତି । ଅବଶ୍ୟ ଗୁରୁପ୍ରସାଦଙ୍କ କ୍ଷେତ୍ରରେ ଏହା କିଛିଟା ଉପରଠାଉରିଆ, କିନ୍ତୁ ରମାକାନ୍ତଙ୍କ କ୍ଷେତ୍ରରେ ରକ୍ତକୁ ପାଣି କରିଦେବା ଭଳି ଶକ୍ତ ଓ କରୁଣ । ଯାହାହେଉ, ଏହି ମଧ୍ୟଶ୍ରେଣୀର କୁହାଯାଇ ପାରେ ଯେ 'ଚିରନ୍ତନ ଅନସ୍ତିତ୍ୱ'ର ଅସମ୍ଭାବନା ଏବଂ ରକ୍ତମାଂସର ମାୟାବନ୍ଧନ ମଣିଷର ସହଜ-

ଦ୍ରଷ୍ଟା ଗୁରୁପ୍ରସାଦଙ୍କ ପୃଥିବୀର ଏହି ଜୀବନ ବା ଜୀବନର ଏହି ପୃଥିବୀ ପ୍ରତି ଆସକ୍ତ କରାଇଛି । ଜୀବନର ସାର୍ଥକତା ପ୍ରତି ସଂଶୟ ସତ୍ତ୍ୱେ କେଜାଣି କାହିଁକି ଜୀବନରେ ଅର୍ଥ ଖୋଜିବାର ଚେଷ୍ଟା ଅପ୍ରତିହତ ଓ ଅକ୍ଳାନ୍ତ । କିନ୍ତୁ ଏବେ ତାହା ମିଳିବାର ନୁହେଁ, ତାଙ୍କୁ ମିଳୁନାହିଁ । ଗୁରୁପ୍ରସାଦଙ୍କ ଆଖିର କପୋତ ଏହି ପୃଥିବୀ ଉପରେ ଉଡ଼ିବୁଲୁଛି :–

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧା ପାଇ ପ୍ରତିଦିନ ଫେରିଆସେ ଏହି ପୃଥିବୀକୁ ।
ସେଇଁଠାରେ ତୁମେ କର ପ୍ରତିଦିନ ବିଜନ ପ୍ରତୀକ୍ଷା
ଜରାମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।
( 'ସମୁଦ୍ରସ୍ନାନ' ପୃ ୨୩ )

'ସମୁଦ୍ରସ୍ନାନ'ର ବିଭିନ୍ନ ସ୍ଥଳରେ ଏହି ପୃଥିବୀର ଉଲ୍ଲେଖ ମିଳିଥାଏ । ତହିଁରୁ କେତୋଟି ଏଠାରେ ଉଦ୍ଧାର କରାଯାଇପାରେ ।

( କ ) ପୃଥିବୀ ପୃଷ୍ଠରେ ଲୋଟି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।
( 'ଚମ୍ପାଫୁଲ' ପୃ ୧ )

( ଖ ) ଏ ବର୍ଷର ନଷ୍ଟ ଆତ୍ମା ଏ କାଳର ଅପନ୍ତରାପରେ
ଭୁଲିଯାଏ ବାଟ ଅବା ଭୁଲିଯାଏ ପୃଥିବୀର ସ୍ମୃତି ।
( 'ନିହତଗୋଧୂଳି' ପୃ ୨୫ )

( ଗ ) ଆମର ଏ ପୃଥିବୀରେ କେବେ କିଛି ଲୋଡ଼ାହୁଏ ନାହିଁ
ମଶାମାଛି, ପୋକଯୋକ ଲୋକବାକ କାଉ ଓ ବାଦୁଡ଼ି
ଆଶ୍ଚର୍ଯ୍ୟ ପୃଥିବୀ ହୁଏ ହତବାକ୍ ଅଭିଭୂତ ସୂର୍ଯ୍ୟାସ୍ତ ଭିତରେ
ପ୍ରତିଦିନ ଏ ପୃଥିବୀ ଆକାଶର ଅପନ୍ତର ଡେଇଁ
ଅଜ୍ଞାତ ବା ଅବଜ୍ଞାତ କେଉଁ ଦୂର ଅନ୍ଧାରକୁ ଧାଏଁ ।
( ହରେକୃଷ୍ଣ ଦାସ-୧ ପୃ ୨୮ )

( ଘ ) ସବୁଜ କବିତା ପରି ହୁଏତ ବା ଏ ପୃଥିବୀ
ରୋମାଣ୍ଟିକ ସ୍ୱପ୍ନାଭ ସୁନ୍ଦର
ଏ ପୃଥିବୀ ଜଣାଯାଏ ବନ୍ଧୁହୀନ କ୍ଳାନ୍ତିହୀନ
କେଉଁ ଏକ ଅନ୍ୟ ଦେଶପରି ।
( ହରେକୃଷ୍ଣ ଦାସ-୨ )

( ଙ ) ଏହି ଭଲ ପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା
ଏତେ ରୂପବତୀ
ହୁଏତ ଏ ପୃଥିବୀକୁ ଭଲପାଏ ଦେହ ମୋର ସ୍ମୃତିର
ଏ ବେଦନା ଭିତରେ
ତଥାପି ମୋ ଶରୀରପାଖେ ସମସ୍ତର ହାହାକାର ମୃତ୍ୟୁର ଏ
ଚରମ ଶୂନ୍ୟତା
ଶୂନ୍ୟ ଏହି ବେଦନାର ବର୍ଷଣ୍ଣ ଏ ଗୋଧୂଳିରେ ଏ ପୃଥିବୀ
ଏ ମ୍ଳାନ ଆକାଶ । ( ସିଢ଼ି ଆ )

( ଚ ) ଆକସ୍ମିକ ଦେହ ମୋର ପୃଥିବୀର ଘଟଣାଜନିତ
ଆକସ୍ମିକ ଘଟଣାରୁ ଉପଜାତ ତୁମର ଏ ଦେହ
ଅସରନ୍ତି ଏ ବାଟରେ ତୁମେ ଓ ମୁଁ ସମସ୍ତର ହାତ
ମୋର ଭଲ ପାଇବାର ଯୁକ୍ତି ଆଉ ତୁମର ସନ୍ଦେହ ।
( ସନେଟ୍-୨ )

ଏହି ପୃଥିବୀରେ ରୂପବତୀ ନାରୀର ଦେହ ଭିତରେ ଗୁରୁପ୍ରସାଦଙ୍କ ଅର୍ଥଖୋଜାର ଉଦ୍‌ଭ୍ରାନ୍ତ ସାଧନା । 'ସମୁଦ୍ରସ୍ନାନ'ର ପ୍ରଥମ କବିତା 'ଚମ୍ପାଫୁଲ'ରେ ଜୀବନ ଓ ଯୌବନ ଉପରେ ରୂପବତୀ ତରୁଣୀର ଦୁର୍ନିବାର ପ୍ରଭାବକୁ କବି ଉପସ୍ଥାପିତ କରିଛନ୍ତି । ଭବାବେଗ ମୁଗ୍‌ଧିର ଏବଂ ଇନ୍ଦ୍ରିୟସଂବେଦୀ ।

ଚମ୍ପା ଫୁଲ ମହକରେ କେତେ ସେ ଯେ ବାରୁଣ କୁହୁକ
ରକ୍ତେ ଯାଏ ନିଆଁ ଲାଗି ସ୍ମୃତି ଆଜ ନିଃଶ୍ୱାସରେ ନିଆଁ
ସ୍ମୃତି ଆଜ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହ
ଝଳୁକି ଚମକ
ଝଲକ ଚମକ ସେ ଯେ ବଣ ନିଆଁ ସବୁ ଯାଏ ଛିନ୍ନ ଭିନ୍ନ
ହୋଇ
ପୃଥିବୀ ସ୍ମୃତିରେ ଲେଟି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।

ଏଇ ପ୍ରଭାବରେ ଭଲ ପାଇବା ଅର୍ଥାତ୍ ପ୍ରେମ ହିଁ ସବୁଠାରୁ ମୂଲ୍ୟବାନ୍ ପ୍ରସଙ୍ଗ । ଏ ପ୍ରେମ କିନ୍ତୁ ସର୍ବାଂଶରେ ପ୍ରାୟ ଦେହସର୍ବସ୍ୱ, ଯେଉଁଥିପାଇଁ ଯୁକ୍ତିତର୍କର ମଧ୍ୟ ସୀମା ନାହିଁ । 'ସନେଟ୍-୪' ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।

ପୃଥିବୀର ଏ ଦେହରେ ଖୋଜି ଖୋଜି ମୁଁ ତୁମର ମନର ସନ୍ଧାନ
ଆଜି ହୁଏ ଉପଗତ ଉପକୂଳେ ତୁମର ଦେହର
ମୁଁ ତେଣୁ ତୁମକୁ ଖୋଜେ ରକ୍ତେ ମୋର ଦେହର ସୀମାରେ
ତୁମର ଆତ୍ମା ବା କାହିଁ ଦେହ କାହିଁ ତୁମର ମନର
ମୁଁ ତୁମକୁ ଭଲ ପାଏ ପୁଂଜିଭୂତ ଏ ଦେହରେ
ଆତ୍ମା ମୋର ମନର ପିପାସା
ମୁଁ ଯେଣୁ ତୁମର ଦେହ ଖୋଜେ ମୋର ଏ ଦେହରେ
ସବୁ ମୋର ଆଶା ଓ ନିରାଶା

ଏଣୁ ନାରୀ କେତେବେଳେ ସଦ୍ୟ ଚମ୍ପାଫୁଲ, ଅନ୍ୟ କେତେବେଳେ ସେ ପୁଣି ସୁନାର ଝରଣା । ଦେହରେ ଫୁଟିଲା ଫୁଲର ଫୁଲଗଛ; ସ୍ମୃତି ସବୁବେଳେ 'ଗୋଲ', ଆଖିରେ, ଓଠରେ, ମୁହଁରେ ବାରମ୍ବାର ତାରା ଆଉ ଜହ୍ନ, ଜହ୍ନ ଆଉ ତାରା । ଏଣୁ ଜହ୍ନ ଆଉ

ତାର ଗୁରୁପ୍ରସାଦଙ୍କର ଅତି ପ୍ରିୟ ଉପମାନ, ଯାହା ସବୁବେଳେ ସ୍ତନୋଦ୍ଭିନ୍ନମୟୀ ତନ୍ୱୀ ତରୁଣୀ ପାଇଁ ସଂରକ୍ଷିତ । ଏହି ଜହ୍ନ ଓ ତାରା ହିଁ ଯେପରି କି ତାଙ୍କ ଆସକ୍ତିମୟ ପୃଥିବୀରେ ଆସକ୍ତିର ପ୍ରତିବନ୍ଧ । ଜହ୍ନ ଆଉ ତାରାଆଡ଼କୁ ଛୁଟିଯିବା ତାଙ୍କ ପାଇଁ ସବୁଠାରୁ ବଡ଼ ନିଶା, ଜୀବନର ସାର୍ଥକତା । କାବ୍ୟନାୟକର ସ୍ୱପ୍ନ ହେଲା—

ତୁମର ଦାନ୍ତରେ ମୋର ଓଠ ଯିବ ଛିନ୍ନ ଭିନ୍ନ ହୋଇ
ତୁମର ଛାତିରେ ଯିବ ଦଳି ହୋଇ ବାଲିଚର ନିଶୂନ ନିଘଞ୍ଚ
ତୁମର ଦେହର ରକ୍ତ ପାଣି ଫାଟି ଅଣ୍ଡା ହୋଇଯିବ
ତୁମର ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ !

( 'ପ୍ରିୟବନ୍ଧବୀ' )

ଏହି ଦେହ ଭିତରେ ହିଁ ଯେପରି କି ଅଦ୍ୱୈତବାଦର ସାଧନା । ସ୍ୱର୍ଗ ବୋଲି କିଛି ନାହିଁ, ଅମରତ୍ୱ ବୋଲି କିଛିନାହିଁ, ସବୁ ଏହି ଦେହ । ଡ଼ି. ଏଚ୍. ଲରେନ୍‌ସଙ୍କ ପରି ସେ ଯେପରି କହିବାକୁ ଚାହାନ୍ତି : 'Immortality, the heaven is only a projection of the strange but actual fulfilment here in the flesh.' ସ୍ୱର୍ଗ ଏକ ଅଧ୍ୟାସ, ଏକ ଆରୋପ ମାତ୍ର, ରକ୍ତମାଂସର ତୃପ୍ତି ଭିତରେ ସ୍ୱର୍ଗସୁଖ, ଅମରତ୍ୱ । ହାଡ଼ ଆଉ ମାଂସର ସ୍ପନ୍ଦନ ଶୁଣିବାକୁ ହେବ । ଉପେନ୍ଦ୍ରଭଞ୍ଜଙ୍କ ପରି ଗୁରୁପ୍ରସାଦ ମଧ୍ୟ ସତେ ଯେପରି କହିବାକୁ ଚାହାନ୍ତି ନାରୀ ହେଉଛି 'ଯୁବାବଇକୁଣ୍ଠପୁର' କମ୍ୱା 'ଯାହାର ଯୁବା ବୟସେ ମନର ଯୁବତୀ ପାଶେ ନାହିଁ ତାର ଜୀଇଁବାରେ କି ପ୍ରୟୋଜନ' । ଗୁରୁପ୍ରସାଦଙ୍କ କବିତାରେ ଦେହର ଗୁରୁତ୍ୱ ସମ୍ପର୍କରେ କୌଣସି ସନ୍ଦେହ ନାହିଁ, ତାହା ସୁପରୀକ୍ଷିତ । ଯଥାର୍ଥରେ କୁହାଯାଇଛି, 'ବଳିଷ୍ଠ ଦୃଷ୍ଟିକୋଣରୁ ଦେହର ବର୍ଣ୍ଣନା ଗୁରୁପ୍ରସାଦଙ୍କ କବିତାରେ ଦେଖିବାକୁ ମିଳେ ।

ବାରମ୍ବାର ଏହାର ବ୍ୟବହାର ଏହାର ପ୍ରାଧାନ୍ୟ ସୂଚାଇଥାଏ । ସମସ୍ତ କବିତାରେ ଦେହ ଶବ୍ଦଟି ପ୍ରାୟ ୧୨୦ଥରରୁ ଅଧିକ ବ୍ୟବହାର ହୋଇଅଛି । ଏହି ସଂଖ୍ୟା ସୂଚେଇ ଦିଏ କବିଙ୍କ ମନରେ ଦେହ ଚେତନା କେତେ ଦୂର ପକ୍ଷ ବିସ୍ତାର କରିଛି । ଏହା ତାଙ୍କ କବିତାର ଗୋଟିଏ ମୁଖ୍ୟ ଧାରା ନୁହେଁ, ଏହା ହିଁ ତାଙ୍କର କବିତା ।

( 'ଦେହ ଓ ଅଦେହର କବି ଗୁରୁପ୍ରସାଦ' ସୌରୀନ୍ଦ୍ର ବାରିକ, ଇସ୍ତାହାର, ପୃ.୫୧-୫୨ )

ଦେହ ଭିତରେ ମୁକ୍ତିର ସ୍ୱପ୍ନ ଶେଷ ପର୍ଯ୍ୟନ୍ତ କିନ୍ତୁ ସଫଳ ହୋଇ ପାରିନାହିଁ । ଯାବତୀୟ ଅସାଧାରଣ ପ୍ରଶଂସା ଏକ ଏକ ଭ୍ରାନ୍ତି ଅପେକ୍ଷାରେ ପରିଣତ ହୁଏ । ଶୂନ୍ୟତା, ବିଚ୍ଛିନ୍ନତା, ନିଃସଙ୍ଗତା ଜୀବନର ପ୍ରକୃତ ସ୍ୱରୂପ । କବିଙ୍କ ହରେକୃଷ୍ଣ ଦାସ ଲେଖନ୍ତି –

ସବୁଜ କବିତା ପରି ହୁଏତ ବା ଏ ପୃଥିବୀ
ରୋମାଣ୍ଟିକ୍ ସ୍ୱପ୍ନାଭ ସୁନ୍ଦର
ବେଥୋଭେନ ଗୀତ ପରି ହୁଏତ ବା ଏ ଜୀବନ
ଦେହହୀନ କେତୋଟି ମୂର୍ଚ୍ଛନା
'ଧୂପର' ବିରହ ପରି ହୁଏତ ବା ଏହି ମନ
ଆକାଶର ଭସାବୁଦା ମେଘ
ହୁଏତ ବା ଏହି ଦେହ ପଦ୍ମ ସର ମାଳ ମାରେ
ନାଗଲୋକ କନ୍ୟାର କାମନା । ( 'ସମୁଦ୍ରସ୍ନାନ' ପୃ.୩୦ )

କିନ୍ତୁ ଏ ସବୁ 'ହୁଏତ ବା', — ଏଥିରେ ନୈଶ୍ଚିତ୍ୟ ନାହିଁ । ପରେ ପରେ ହରେକୃଷ୍ଣ ଦାସଙ୍କ ସ୍ପଷ୍ଟୋକ୍ତି —

ତଥାପି ଶୀତର ଥଣ୍ଡା ରାତି ଆଉ କୁହୁଡ଼ିର
ଧୂଆଁଳିଆ ଦେହ

ଗଳିରୁ ଗଳିକୁ ବୁଲିଁ ବୁଲିଁ ଲାଇଟ ପୋଷ୍ଟ
ବଗୁଲିଆ ସ୍କୁଲ ପିଲି ପରି
ରଙ୍ଗପୁର ବଜାରର ଆଲୁଅ ଓ ଠେଲାଠେଲି
ଗହଳି ଭିତରେ
ଏ ପୃଥିବୀ ଜଣାଯାଏ ବନ୍ଧୁହୀନ କ୍ଲାନ୍ତହୀନ
କେଉଁ ଏକ ଦୂରଦେଶ ପରି । ( ସମୁଦ୍ରସ୍ନାନ, ପୃ.୩୦ )

ସମ୍ପର୍କ ସମ୍ଭବ ନୁହେଁ, ସଂଯୋଗ ସମ୍ଭବ ନୁହେଁ, ତାହା ସହିତ ତାହାର ବନ୍ଧୁତା ଅସମ୍ଭବ । ସବୁ ସ୍ଥିତି କେବଳ 'ନାହିଁ' । ଦୂର ଦେଶଟି ଯେପରି, ନଗରର ପୃଥିବୀଟି ବି ସେହିପରି । ବନ୍ଧୁହୀନ ଓ କ୍ଲାନ୍ତହୀନ । ସମ୍ପର୍କର ଜଗତଟି ଯେଉଁଠି ଏହିପରି, ସେଠି ପ୍ରେମରେ ନିଶ୍ଚିତ୍ର ସାର୍ଥକତା ଏକ ମିଛକଥା । କୁହୁଡ଼ି । ସମୁଦ୍ରରେ ସ୍ନାନ ନୁହେଁ, ସମୁଦ୍ରସ୍ନାନ ନାଁରେ ଫେଣ ଚୁମ୍ବିବା ମାତ୍ର । ତାହା ସହିତ ରହିଛି ସମୟର କ୍ଷିପ୍ରଗାମୀ ଦନ୍ତର ଦଂଶନ ଓ ଦେହର ଦ୍ରୁତ କ୍ଷୟଶୀଳତା । କାବ୍ୟ ନାୟକର ଅନୁଭୂତି ହୋଇ ଉଠେ ମାଇଲ ମାଇଲ୍ ବ୍ୟାପୀ ବିଫଳତାର ବାଲୁକା ବିସ୍ତାର ମାତ୍ର । ଯେତେଦୂର ଯାଏ ଗୃହ ଚଉପାଶେ ଖାଲି ବାଲି, ନାହିଁ କାହିଁ ଶ୍ୟାମ ଶସ୍ୟ ନବ ଦୁର୍ବାଦଳ । ରାଧାନାଥଙ୍କ ହତାଶ କାବ୍ୟନାୟକ ଦିନେ ଗାଇଥିଲା --

ଭାଗ୍ୟଧର ଭାଗ୍ୟ ଆକାଶେ ଶୋଭିବ
ତାରା ରୂପେ ଏ ନବୀନା
ମୋ ଭାଗ୍ୟେ ନୁହଇ ଆଶାର ତାରାଏ
ଦୁରାଶାର ଉଲ୍‌କା ସିନା । ( 'ଯଯାତିକେଶରୀ' )

ଗୁରୁପ୍ରସାଦଙ୍କ କ୍ଷେତ୍ରରେ ଭାଗ୍ୟ ଫାଗ୍ୟ କଥା ଉଠୁନାହିଁ । ତା'ର ନୈରାଶ୍ୟ ନାହିଁ, ଅଛି ସମ୍ପୂର୍ଣ୍ଣ ବିଫଳତା । କାବ୍ୟନାୟକକୁ ଶୂନ୍ୟ ଲିଭରୁମ୍ବା ଧରି ଫେରି ଆସିବାକୁ ପଡ଼େ, ଶୂନ୍ୟତାର ଦୁଃସହ

ଯନ୍ତ୍ରଣା ଭିତରେ ବିଫଳତାର ନିରର୍ଥକ ନୀରବ ଚିତ୍କାର ହୋଇଉଠେ ତାର ଜୀବନ ।

ମୋ ପାଇଁ ଚଳିତ କେବେ ଯାଇ ନାହିଁ ପଥର ଥରାଇ
ମୋ ପାଇଁ ଗଳିର ମୋଡ଼ କେବେ ହେଲେ
ତେଇଁ ଉଠି ନାହିଁ
ଯେତେ ଯୁକ୍ତି ତର୍କ ଯେତେ ସବୁ ବାଦ
ପ୍ରତିବାଦ ପରେ
ମୋ ପାଇଁ ଯ ଇଛି ରହି ଯୁକ୍ତ ଆଉ ବିଯୁକ୍ତ ମୀମାଂସା
ଏକମାତ୍ର ସମାଧାନ ମୋର
ମୁଁ ଏଠି ଚମକି ଦେଖେ ପଥ ଝଡ଼େ
ଅନ୍ଧ ଚକ୍ଷୁ ଛୁଞ୍ଚା ହୋଇ ରହେ
କହୁଡ଼ି ପରେ କହୁଡ଼ି ଗିଳ ସମସ୍ତର ଆଖିଠାରୁ ମାର
ତା' ଉଠର ଫାଙ୍କ ପରି ପଡ଼ି ରହେ ଏହି ଗଳିମୋଡ଼ ।
( 'ଗୋବର ଗଣେଶ' )

ଗୁରୁପ୍ରସାଦଙ୍କ କବିତାକୁ 'ଗଭୀର ଅନୁଭୂତିରୁ ଜାତ ଅସଫଳତାର ଏକ ଛବି' ବୋଲି ଅଧ୍ୟାପକ ସୌମ୍ୟେନ୍ଦ୍ର ବାରିକ ଯାହା କହିଛନ୍ତି ତା' ସତ୍ୟ । ( ଇସ୍ତାହାର-୨, ପୃ.୫୫ ) 'ଚମ୍ପାଫୁଲ' କବିତାଟି ପଢ଼ି କବିଙ୍କ ସମ୍ପର୍କରେ କେହି ଯଦି ଶେଷ ଧାରଣା କରି ବସନ୍ତି, ସେ ନିଶ୍ଚୟ ଚରମ ଭୁଲ୍ କରି ବସିବେ । 'ଚମ୍ପାଫୁଲ' ସୁଦୂର କେଳାଭୂମିରୁ ସୁଦୂରତମ ସମୁଦ୍ରର ଆପାତସୁନ୍ଦର ଏକ ସ୍ୱପ୍ନଛବି ମାତ୍ର । 'ସମୁଦ୍ରସ୍ନାନ'ର ତାହା ପ୍ରକୃତ କି ଚୂଡ଼ାନ୍ତ ଅନୁଭୂତି ନୁହେଁ, ସେଥିରେ ପ୍ରକୃତ ସମୁଦ୍ରସ୍ନାନର ଅଭିଜ୍ଞାନ ନାହିଁ । 'ସମୁଦ୍ରସ୍ନାନ'ର କାବ୍ୟନାୟକର ବାସ୍ତବ ଅନୁଭୂତି ଘୋର ଲବଣାକ୍ତ ଝଡ଼ସଂକୁଳ, ଆଉ ତିମି ତିମିଙ୍ଗଳର କଥା । ତାହା ନୈରାଶ୍ୟର ବିଷାଦର, ଦୁଃଖର, ବେଦନାର, ବିଡ଼ମ୍ବନାର,

ବ୍ୟର୍ଥତାର, ବିଫଳତାର, ଯନ୍ତ୍ରଣାର, ନୀରବତାର, କାରୁଣ୍ୟର, କ୍ଷୟର, ପତନର, ବିନାଶର । ଅନ୍ଧାର. ପିଚ୍ଛଳ ପରିବେଷ୍ଟନୀ, ମ୍ଳାନ ବିବର୍ଣ୍ଣ ସନ୍ଧ୍ୟା, ଗର୍ତ୍ତ ଓ କୋରଡ଼ ଆଖି, ନିଷ୍ପ୍ରାଣ ଓ ଝଡ଼, ଛେପ ଢୋକ ତଣ୍ଟି ଶୁଖିଯାଏ, ତଥାପି ତଥାପି ବଞ୍ଚି ଅଛି ଯାଏ ହୋଇନ ସମ୍ଭବ, ତା'ଉପରେ ଫାଙ୍କ ପରି ପଡ଼ି ରହେ ଏକ ଗଳମୋଡ଼, ଜହ୍ନ ନାହିଁ ତାରା ନାହିଁ, ଅପନ୍ତରା ସମୟର ଗୁହାତଳେ କୁଢ଼ କୁଢ଼ ଉଚ୍ଛିଷ୍ଟ, ହାଡ଼ରୁ ପଚିଲା ମାଂସ ଖସି, ଆକାଶରେ ମେଘ ଆଉ ମେଘ, ନିଶବ୍ଦ କାଳଚର, ପଞ୍ଜରର ପଳିତ ମୂର୍ଚ୍ଛନା, ବର୍ଷଟିଏ ଖସିଯାଏ ଆସ୍ତେ ଖସିଯାଏ. ପୁଞ୍ଜୀଭୂତ ବ୍ୟର୍ଥତା, ରାତିର ପ୍ରସୂତି କଷ୍ଟ ସକାଳର ରୁଗ୍ଣ ଜନ୍ମନେବା, ଜୀର୍ଣ୍ଣ ଚଇତର ଜରାଗ୍ରସ୍ତ ବିବର୍ଣ୍ଣ ଦେହ, ନିସ୍ତୁଠିଆ ଘର, ସମୁଦ୍ରର ଢେଉଙ୍କର ନିରର୍ଥକ ଚେଷ୍ଟା ଆଉ ନଷ୍ଟ ଯେତେ ଆପ୍ଲୁତର କୋହ, କୁହୁଡ଼ି, ବାଟୋଇ ପକ୍ଷୀର ଗୀତ ମରିଗଲାଣି, ଭ୍ରାନ୍ତ ଅପେକ୍ଷା, ଦୁରନ୍ତ ଓ ଦୁର୍ବିସହ ଘୂର୍ଣ୍ଣାବର୍ତ୍ତ, ଖରା ଦୁପହରର ତପ୍ତ ଧୂସରତା, କୁହୁଡ଼ି ଓ କାକରର ରାତି, ସମୁଦ୍ରର ମରୁଭୂମି, ଆକାଶର ନିଃସଙ୍ଗତା, ବର୍ଷର ନିଷ୍କ ଆତ୍ମା, ଅବସନ୍ନ ସହରର, ନିଷ୍ଟୁଳ ସ୍ଥବିର ଦେହ, ନିହତ ଗୋଧୂଳି, ଗନ୍ତବ୍ୟହତ ପଥଭ୍ରାନ୍ତ ନିର୍ବାକ ଅନାଇଁବା, ବନ୍ଧୁହୀନ କ୍ଳାନ୍ତିହୀନ ଅନ୍ୟବେଶ, ସୂର୍ଯ୍ୟ ନିଭିଯାଏ, ଭୟ ଆଉ ପାପ, ଜୀବନର ଭଗ୍ନାଂଶ, ଘୋର ଦୁର୍ଦ୍ଦିନ, ନିଶବଦ ମଶାଣିର ଜୁଇଗାଡ଼ ମଶିଣା ଓ ଛିଣ୍ଡାକନା ଖପରା, କୁଣ୍ଡ କୁଢ଼ ଛୁପ ଛୁପ କାଳି ଓ ଅନ୍ଧାର, ଅଣ୍ଡା ଆଖି ଡୋଳା ତଳେ ଖାଲି ବ୍ୟର୍ଥ ଅବ୍ୟକ୍ତ ବିଷାଦ, ସ୍ତବ୍ଧ ଗତିହୀନ ସ୍ତବ୍ଧ ଗତିହୀନ ଘନୀଭୂତ ନିସ୍ପନ୍ଦ ନିଥର ନିଶବ୍ଦ ମୁହୂର୍ତ୍ତ, ବାଟର ନିରାଶ ଆଉ ରକ୍ତମାଂସ ସ୍ନାୟୁର ବିରକ୍ତି, ଯାହାର ଧୂସର କ୍ଳାନ୍ତି, ମୃତ୍ୟୁର ନିଶବ୍ଦ ସଂସ୍କୃର, ସମୟର ହାହାକାର, ମୃତ୍ୟୁର ଚରମ ଶୂନ୍ୟତା, ସମୟର ହାତ, ହଳଦିଆ ପୃଷ୍ଠା ଯେତେ ସମୟର,

ପ୍ରେମିକର ହାହୁତାଶ, ଆତ୍ମହତ୍ୟା, ଝଡ଼ଫୁଲ ମୂର୍ଚ୍ଛା ଦିଗନ୍ତ ଓ ତିକ୍ତ ବିରକ୍ତି — ଏଇଥିରେ ଗଢ଼ା ତାଙ୍କ ଜଗତ୍ । ପାଣି ବୁନ୍ଦାଟିଏ ନାହିଁ, ଖାଲି ପାହାଡ଼ ଆଉ ପାହାଡ଼ । ଗୁରୁପ୍ରସାଦଙ୍କର ଏ କବିତାଟିର ପ୍ରମୁଖରୂପକ (Major Metaphor) ହୋଇ ଦେଖାଦେଇଛି ବାଲି । ଜନ୍ମ ଓ ମୃତ୍ୟୁର ତାଙ୍କର ସ୍ୱପ୍ନ ବାରମ୍ବାର ଏକ ବାଲୁକାମୟ ଅନୁଭୂତିରେ ମୂର୍ତ୍ତିମାନ ହୋଇଉଠେ ।

(କ) ମୁଁ ମନେ ଗତର ସବୁ ବୁଢ଼ା ହୋଇଯାଏ ଶୀତଋତୁ
ରଙ୍ଗ ସବୁ ଛୁଞ୍ଚିଲଗି ଦେହରେ ମୁଁ ଛିଣ୍ଡାଲୁଗା ଭଙ୍ଗା କୋଠାଘର
ଏ ମନ ଖେତ କାହିଁ କେଉଁ ସ୍ମୃତିଟିକେ କେଉଁ ଅଜ୍ଞାତର
ଏଠି ମୋର ଗୃହପାଖେ ବାଲିଚର ଖାଲି ବାଲିଚର ।
(ପ୍ରିୟବାଂଧବୀ)

(ଖ) ସମୁଦ୍ରବାଲିରେ ଜହ୍ନ ଆଜି ହୁଏ ଲଜ୍ଜିତ
ଆକାଶରେ ମେଘ ଆଉ ମେଘ
ଜହ୍ନ ଯାଏ ତା' ଭିତରେ ମରି ହଜି ନବିକାଦେ
ସମୁଦ୍ରବାଲିରେ ସ୍ୱପ୍ନ କାହାର ବା ଚେତନା କାହାର ।
(ଶରତ ଋତୁରେ ଜହ୍ନ)

(ଗ) ଏକରେ ଅନ୍ଧାର ଉଠେ ଗିଳି ରେଖା ଆକାର ପ୍ରକାର
ସୀମିତ ମୋ ପୃଥିବୀର ଦିଗ ହଜେ ହଜିଯାଏ ଉପର ଓ ତଳ
କ୍ଲାନ୍ତ ମୋର ଦେହ ଛୁପି ମାଡ଼ି ଆସେ ବାଲିଚର
ବାଲି ଓ ଅନ୍ଧାର
ପାଦ ଯେବେ ଛନ୍ଦି ଦିଏ ଅନ୍ଧାରରେ ଗୁଡ଼ିକଙ୍କ ନଡ଼ା
ଦେହ ମୋର ଘେରି ରଖେ ଚୁପ ଚୁପ କୁଢ଼ କୁଢ଼
ବାଲି ଓ ଅଙ୍ଗାର । (କାଳପୁରୁଷ)

ପାରମ୍ପରିକ ସାମୟିକ ମୁକ୍ତି ତା'ର କାମ୍ୟ ନୁହେଁ । ଏଇ ଜୀବନ ଭିତରେ ଦେହ ଓ ପ୍ରେମ ଭିତରେ ସେ ଖୋଜେ ସାର୍ଥକତା ।

କିନ୍ତୁ ତାହା ସଫଳ ହୁଏନାହିଁ । ସମସ୍ତଙ୍କ, ମୃତ୍ୟୁର ହିମ ଶୀତଳ ଶ୍ୱାସ ହାତ ଲମ୍ବିଆସେ । ବଫଳତାର ଏକ ବିସ୍ତୀର୍ଣ୍ଣ ବାଲୁଚର ହୋଇ ଉଠେ କାବ୍ୟନାୟକର ଅନୁଭୂତିର ବାସ୍ତବ ଭୂମିକା-ଣ୍ଟା'ର ଉପରେ ଗଢ଼ି ଉଠେ ଏକ ବିଷାଦବାଧ୍ୟ ଜୀବନ ଜିଜ୍ଞାସାର ସ୍ୱରୂପ । 'ସମୁଦ୍ରସ୍ନାନ' ସେହି ଜୀବନ ଜିଜ୍ଞାସାର ଏକ ନାଟ୍ୟକ ଉପଲବ୍ଧି ଓ ଉପସ୍ଥାପନା । ସଂକ୍ଷେପରେ କହିବାକୁ ଗଲେ, ଦେହ ଭିତରେ ଗୁରୁପ୍ରସାଦ ଖୋଜିଛନ୍ତି ଜହ୍ନ ଆଉ ତାରା, ପାଇଛନ୍ତି କିନ୍ତୁ କାଳି ଆଉ ବାଲି । ଗୋଟିଏ ଦିଗରେ ଜହ୍ନ ଓ ତାରା, ଏବଂ ଅନ୍ୟ ଦିଗରେ ବାଲି ଏହା ହିଁ ଯେପରି ତାଙ୍କର କବିତା । ଆଶାର ନୁହେଁ, ଗୁରୁପ୍ରସାଦଙ୍କ ଜୀବନ ଜିଜ୍ଞାସା ଦେଉଛି ନୈରାଶ୍ୟର କଥା କହୁଥାଏ । ରାଧାନାଥଙ୍କ ପରେ ନୈରାଶ୍ୟବାଦର ସ୍ୱର ଅନ୍ୟ କୁତ୍ରାପି ଏତେ ଗମ୍ଭୀର ଭାବରେ ଶୁଣା ଯାଇ ନଥିଲା । ଆଜିର ମଣିଷର ନୈରାଶ୍ୟପୂର୍ଣ୍ଣ ଭବିଷ୍ୟତ ସମ୍ପର୍କରେ ଗୁରୁପ୍ରସାଦଙ୍କର ଗୋଟିଏ କାବ୍ୟାଂଶ ଉଦ୍ଧାର କରି ଏ ଆଲୋଚନା ଶେଷ କରାଯାଇପାରେ ।

ଅପରାଜିତାର ଗାଢ଼ ବାଇଗଣି ବଉଦ ଉପରେ
ସୂର୍ଯ୍ୟ କେବେ ଉଭେଇଯାଏ ମୁହ ଭିଜ ହଳଦିଆ ପ୍ରଜାପତି ପରି
ମଣିଷର କେତେ ସ୍ୱପ୍ନ ଆଶା ଓ ନିରାଶା କେତେ ଯୋଜନା ଓ
କମିଟି ଭିତରେ
ସୂର୍ଯ୍ୟ କେବେ ନଇଁଯାଏ ଆସ୍ତେ ଆସ୍ତେ ସ୍ଲେଟ ହୋଇ
ବ୍ୟାଟେରୀ ନ ଥିବା ସାନ ଟର୍ଚ୍ଚ ଲାଇଟ୍ ପରି । ୩୦ ।

( ହରେକୃଷ୍ଣ ଦାସ-୨ )

# ଗୁରୁପ୍ରସାଦଙ୍କ କାବ୍ୟଶୈଳୀ

## ଗୋବର୍ଦ୍ଧନଚନ୍ଦ୍ର ନାୟକ

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଗୁରୁପ୍ରସାଦ ମହାନ୍ତି ଏକ ସୁପ୍ରସିଦ୍ଧ ନାମ । ଧୂଳିଟି କବିତାକୁ ଛାଡ଼ିଦେଲେ ତାଙ୍କର ଅନ୍ୟାନ୍ୟ କବିତା ଗୁଡ଼ିକ 'ସମୁଦ୍ରସ୍ନାନ' କବିତା ଗ୍ରନ୍ଥରେ ସନ୍ନିବେଶିତ ହୋଇଅଛି । କବିତାମାନଙ୍କର ସମୁଦାୟ ସଂଖ୍ୟା ଅଠାଇଶି । ଏତେ କମ୍ ସଂଖ୍ୟକ କବିତା ରଚନା କରି କୌଣସି ଓଡ଼ିଆ କବି ପକ୍ଷରେ ଏତେ ସାର୍ଥକ ଶିଳ୍ପୀ ହେବାର ସୁଯୋଗ ଓ ସୌଭାଗ୍ୟ ମିଳିନାହିଁ । କବିତା ଗ୍ରନ୍ଥର ପ୍ରାରମ୍ଭରୁ ହିଁ ଦେଖାଯାଏ ଯେ ସେ ସିଦ୍ଧିର ଶୀର୍ଷ ଦେଶରେ । ବର୍ଣ୍ଣାର୍ଡ ଶ' କୌଣସି ଏକ ପ୍ରସଙ୍ଗରେ କହିଥିଲେ ଯେ କୌଣସି ବ୍ୟକ୍ତି ପର୍ବତ ଆରୋହଣ କରିବାରେ ଅନେକ ସମୟ ବିତାଇ ଦେଇପାରନ୍ତି; କିନ୍ତୁ ତାର ଶୀର୍ଷରେ ଅଧିକ କାଳ ଅବସ୍ଥାନ କରିବା ତାଙ୍କ ପକ୍ଷେ ସଂଭବ ନୁହେଁ । ବୋଧହୁଏ ସେଇଥିପାଇଁ ଆମେ ଗୁରୁପ୍ରସାଦଙ୍କର ମାତ୍ର ଅଠେଇଶିଟି କବିତା ଦେଖିବାକୁ ପାଉଁ । ଉଭୟ ଦେହ ଏବଂ ଆତ୍ମାରେ କବିତାମାନଙ୍କର ଐକତାନ ଏପରି ସୁସଂହତ ଯେ ପରିମାଣ ଦୃଷ୍ଟିରୁ ଆହୁରି ଅଧିକ କବିତା ରଚନା କରିବା ସମ୍ଭବ ହୋଇପାରିନାହିଁ । ଗୁରୁପ୍ରସାଦ କୌଣସି ନୂତନ ଶୈଳୀ ( ଛନ୍ଦ ଯୋଜନାଗତ )ର ସୂତ୍ରପାତ କରିନାହାନ୍ତି । ତାଙ୍କର ପୂର୍ବରୁ ଏବଂ ପରେ ବହୁ କବି ସେହି ଛନ୍ଦକୁ ନେଇ ପରୀକ୍ଷା କରିଛନ୍ତି । କିନ୍ତୁ ଏପରି ସଂରକ୍ଷିତ ଏବଂ ନିର୍ଭୁଲ ଆନୁପାତିକତା କ୍ୱଚିତ୍ ଦୃଷ୍ଟିଗୋଚର ହୋଇଥାଏ । କବି ସାର୍ଥକତାର ଶୀର୍ଷବିନ୍ଦୁରେ ପହଂଚି ସାରିବା ପରେ ଏତେ ପରିମାଣରେ ବିମୁଗ୍ଧହୋଇଛନ୍ତି ଯେ ଆଉ କୌଣସି ପରୀକ୍ଷା ନିରୀକ୍ଷାରୁ

ନିବୃତ୍ତ ରହିଛନ୍ତି । ଏଣୁ ପ୍ରତ୍ୟେକ କବିତା ଏକପ୍ରକାର ଚେତନ ଶୈଳୀରେ ଗ୍ରସ୍ତ ହେବାପରି ମନେହୁଏ । ଗୁରୁପ୍ରସାଦଙ୍କର କାବ୍ୟଶିଳ୍ପର ମହନୀୟତା ରହିଛି, ଔଚିତ୍ୟ ପ୍ରତିଷ୍ଠା ପାଇଛି, କିନ୍ତୁ ସେମାନଙ୍କର ଉଲଟାର ନମୁନା ନାହିଁ । କବିତାମାନଙ୍କରୁ କବିଙ୍କର ଛନ୍ଦକଳନାଗତ ଶିଳ୍ପଯୋଜନା ଲକ୍ଷ୍ୟ କରିବା ଏ ଲେଖାଟିର ଉଦ୍ଦେଶ୍ୟ ।

'ସମୁଦ୍ରସ୍ନାନ'ର କବିତାଗୁଡ଼ିକୁ ଅଧ୍ୟୟନ କରିବା ସ ସ୍ତରେ ଯାହା ପ୍ରଥମେ ଆଖିରେ ପଡ଼େ ତାହାହେଲା କବିଙ୍କର ପୁନରାବୃତ୍ତି ଶୈଳୀ । କେତେବେଳେ ଖଣ୍ଡବାକ୍ୟ, କେତେବେଳେ ବା ନିର୍ଦ୍ଦିଷ୍ଟ କେତୋଟି ଶବ୍ଦର ପୁନରାବୃତ୍ତି କରି କବି ଯମକର ଭ୍ରମ ସୃଷ୍ଟି କରିଅଛନ୍ତି । କିନ୍ତୁ ତାହା ଯମକ ନୁହେଁ । କବିତାରୁ ଭାବ ତଥା ଧ୍ୱନିର ପୁନରାବୃତ୍ତି କରିଅଛନ୍ତି, କିନ୍ତୁ ତାହା ଦ୍ୱିରୁକ୍ତି ନୁହେଁ । ଏହି ନିର୍ଦ୍ଦିଷ୍ଟ ତଥା ସୁନିର୍ବାଚିତ ପଙ୍କ୍ତିଗୁଡ଼ିକ କାବ୍ୟଶ୍ରୀ ବୃଦ୍ଧି କରିବାରେ ସହାୟକ ହୋଇଅଛନ୍ତି । କାବ୍ୟରଚନାରେ ଯମକ, ଅନୁପ୍ରାସ ଯୋଗକରି ନିର୍ଭେଳ ଧ୍ୱନି ଅନୁରଣନର ବ୍ୟବସ୍ଥା ମଧ୍ୟଯୁଗୀୟ କାବ୍ୟ ପରଂପରାରେ ବହୁପରିମାଣରେ ଦେଖିବାକୁ ମିଳିଥାଏ । କିନ୍ତୁ ଭାବର ଅନୁରଣନ ଓଡ଼ିଆ କାବ୍ୟ ପରଂପରାରେ ଏକ ନୂଆ କଥା । ଏହା ନିଶ୍ଚିତ ରୂପେ ଆଧୁନିକ ଇଂରାଜୀ କାବ୍ୟପରଂପରାର ଏକ ବିଶିଷ୍ଟ ଦିଗ । ସମସାମୟିକ କବିଗଣ, ବିଶେଷ କରି ଇଲିଅଟ୍ କାବ୍ୟଧୀକ୍ଷଣାର ଏହା ମଧୁମୟ ଫଳ । ଜୀବନାନନ୍ଦ ଦାସ ବଙ୍ଗଳା କବିତା କ୍ଷେତ୍ରରେ ଯେପରି ଏହାର ପରୀକ୍ଷା ନିରୀକ୍ଷା କରିଅଛନ୍ତି, ସେହିପରି ଗୁରୁପ୍ରସାଦ ଓଡ଼ିଆ କବିତା କ୍ଷେତ୍ରରେ ଏହାର ପ୍ରୟୋଗ କରିଅଛନ୍ତି । T.S. Eliotଙ୍କର 'The Waste Land' କିମ୍ବା 'Four Quartets' ରେ ଏହାର ବହୁଳ ବ୍ୟବହାର ଦେଖିବାକୁ ମିଳିଥାଏ ।

My nerves are bad to night. yes bad.
Stay with me, speak to me.
Why do you never speak. speak.
What are you thinking of ? What ?
I never know what you are thinking. Think.
[ The Waste Land ]

ଉପରୋକ୍ତ ଉଦାହରଣଟିରେ ଧ୍ୱନି ଏବଂ ଶବ୍ଦର ସାର୍ଥକ ଅନୁରଣନ ଦେଖାଯାଏ । 'କାଳପୁରୁଷ'ଠାରୁ ଆରମ୍ଭ କରି ଅନ୍ୟାନ୍ୟ କବିତା-ମାନଙ୍କ ପର୍ଯ୍ୟନ୍ତ ଏହା ସର୍ବତ୍ର ବ୍ୟାପ୍ତ ହୋଇଅଛି । କବି କେଉଁଠି ସ୍ୱନବୃତ୍ତିକୁ କେବଳ ଧ୍ୱନି ଦୃଷ୍ଟିରୁ ଗ୍ରହଣ କରିଅଛନ୍ତି ଏବଂ ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରି ( ଗୋଟିଏ ଶବ୍ଦକୁ ଦୁଇ ବା ତତୋଧିକ ବାର ପ୍ରୟୋଗ କରି ) କବିତାକୁ ଶ୍ରୁତିମଧୁର କରିଅଛନ୍ତି । ଯଥା —

୧ ଅସମାପିକା କ୍ରିୟାପଦ ଯୋଗେ :—

ଆଜି ଯେବେ ସନ୍ଧ୍ୟାବେଳେ ପଦସବୁ ଝୁଣ୍ଟିଝୁଣ୍ଟି ପଡ଼େ
ନିଛୁଟି ଆ ଏଣିକିରୁ ସନ୍ଧ୍ୟାଯାଏ କୁହୁଳୁଚି ନାଲି ଛବି
ହେମିନ୍ଦ୍ରର ପରି ( ଗୋବର ଗଣେଶ )

୨ ବିଶେଷଣ ପଦର ଦ୍ୱିରୁକ୍ତିଯୋଗେ :—

ଡାହୁକ ଡାକର ଝରା ନାଲି ନାଲି ବେତବୋଳି ଖଜୁରି ଟୋକିର
ପଦସବୁ ଝୁଣ୍ଟିଯାଏ ଚୋଟିରେ ଟି ହାଲ ଯେତେ ଯାଏ
( ସନେଟ୍ ୩ )

୩ ଅବ୍ୟୟ ପଦର ଦ୍ୱିରୁକ୍ତିଯୋଗେ :—

ମୁଁ ତୁମକୁ ଖୋଜିଯିବି ଆଜିପରି ତଥାପି ତଥାପି ( ସନେଟ୍-୩ )

ତଥାପି ତଥାପି କର୍ତ୍ତା ଆଜଯାଏ ହୋଇନ ସମ୍ଭବ
( ଗୋବର ଗଣେଶ )

ସିଗାରେଟ୍ ଡିଆସିଲ୍ ଯଥେଷ୍ଟ ଯଥେଷ୍ଟ ( ଗୋବର ଗଣେଶ )

୪ ଧ୍ୱନ୍ୟାତ୍ମକ ଶବ୍ଦର ବ୍ୟବହାର ଯୋଗେ : —

ଯୁଇଯାଏ ଆକାଶରେ କାଚ ଆଉ ଚକ୍‌ଚକ୍ ଚିକଣ କାଗଜ
ତା କାନର ଦୁଲ୍‌ଦୁଲ୍ ଝିକିମିକି ସଷ୍ଟାର ଆଲୁଅ
ତା ଉପର ଆଡ଼ୁ ଆଲେ ଝିକିମିକି ଶବ୍ଦଶବ୍ଦ ତାରା
( ଗୋବର ଗଣେଶ )

୫ ବିଶେଷ୍ୟ ପଦର ଦ୍ୱିତ୍ତ : —

ରଜାଝିଅ ବେଣୀଫୁଲ ଝମଝମ ଧୂଏଁ ଧୂଏଁ ଭାସି ( ଚମ୍ପାଫୁଲ )

୬ ନିରର୍ଥକ ଶବ୍ଦଯୋଗେ : —

ଏ ଅନ୍ଧାର ଶୋଇପଡ଼େ ଜାକଯୁକ ନିର୍ବିବାଦେ
ନଶବଦ ଯୋଡ଼ଯାଡ଼ ହୋଇ ( କପୋତ କପୋତୀ )

ଗୁରୁପ୍ରସାଦ ମହାନ୍ତିଙ୍କର କବିତାରେ ଉଲ୍ଲେଖଯୋଗ୍ୟ ଘଟଣା ଏହି ଯେ ଅସମାପିକା କ୍ରିୟାପଦ ଗୁଡ଼ିକୁ ସେ ଅନେକ ସ୍ଥଳରେ ଦ୍ୱିତ କରିଅଛନ୍ତି । କେବଳ 'ଗୋବର ଗଣେଶ' କବିତାରେ ଅଠଥର ଏହି ପ୍ରକ୍ରିୟାକୁ ବ୍ୟବହାର କରାଯାଇଅଛି । ଉପରୋକ୍ତ ଉଦାହରଣରୁ ଏହା ସୂଚିତ ହୁଏ ଯେ କେବଳ ମାତ୍ର ଅନୁପ୍ରାସର ଲାଳିତ୍ୟ ଉଦ୍ଦେଶ୍ୟରେ ଗୋଟିଏ କିମ୍ବା ଦୁଇଟି ଶବ୍ଦକୁ ପାଖାପାଖି ଦ୍ୱିତ କରାଯାଇଅଛି । ଏଣୁ କବିତାର ଛନ୍ଦ ଅବାରିତ ଭାବେ ଗତି କରିଅଛି । କୌଣସି କୌଣସି ସ୍ଥାନରେ ଏହି ପ୍ରକ୍ରିୟାରେ ରଚିତ କବିତାର ଭାବ ଅଭିମାନାରେ ଚପଳ ତଥା ଚଞ୍ଚଳ ହୋଇ ଉଠିଛି । କୌଣସି ସ୍ଥାନରେ ମଧ୍ୟ ଏହା ଭାବକୁ ଆହୁରି ତୀକ୍ଷ୍ଣ

କରିବା ଫଳରେ ପାଠକ ନିକଟରେ କାବ୍ୟ ପୁରୁଷର ଭାବମୂର୍ତ୍ତିକୁ ଚିହ୍ନିବାରେ କଷ୍ଟକର ହୁଏନାହିଁ । କିନ୍ତୁ ଅନେକ ସ୍ଥଳରେ ଏହି ଚିତ୍ରକଳ୍ପକୁ ଅଧିକ ଫଳପ୍ରଦ କରିବା ପାଇଁ ଶବ୍ଦକୁ ଦ୍ୱିତ ନ କରି ଗୋଟିଏ ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରାଯାଇଅଛି; କେତେବେଳେ ଏପରି ହୋଇଛି ଯେ ଗୋଟିଏ ପାଦରେ କୌଣସି ଗୋଟିଏ ଶବ୍ଦକୁ ବାରମ୍ବାର ବ୍ୟବହାର କରାଯାଇଅଛି । ପୁଣି ବା ମଝିମଝି ପଦମାନଙ୍କରେ ଏହା କରାଯାଇଅଛି ।

ସେହିପରି କବି ଗୋଟିଏ ଶବ୍ଦକୁ କେତେଥର କୌଣସି ପାଦରେ ବାରମ୍ବାର ବ୍ୟବହାର କରିଛନ୍ତି । ସେଠାରେ ସେହି ପାଦଟିରେ ଅନେକ ବାକ୍ୟ ବା ଖଣ୍ଡ ବାକ୍ୟ ସୃଷ୍ଟି କରିବା ପାଇଁ ପଡ଼ୁଛି । ଫଳରେ ତାହା ଶ୍ରୁତିକଟୁ ନହୋଇ ବରଂ ମନମୁଗ୍ଧକର ହୋଇଅଛି । ଯଥା

ଯଦି କେବଳ କୁହେ ଭୁଲିଯିବୁ, ଗଧତୁମେ
ବୋକାତୁମେ, ଓଲୁ ତୁମେ
ଗୃହଶାଳ ଭେଳକି ଭୁମର ( ଗୋବର ଗଣେଶ )

ଏହି ପ୍ରସଙ୍ଗରେ Eliotଙ୍କର ଶୈଳୀ ଆଖିରେ ପଡ଼େ ।

I keep my countenance.
I remain self-Possessed 'portrait of alady'

କିମ୍ବା

I shall wear white flannel trousers, and walk upon the beach.
I have heard the mermaids singing each to each.
I do not think that they will sing to me.
( The love song of J. Alfred Prufrock.)

ଗୁରୁପ୍ରସାଦ ମହାନ୍ତି ଉକ୍ତ ନ୍ୟାୟରେ ଲେଖିଛନ୍ତି :—

ଋଷୁଦନେ ଗଢ଼ୁଥିଲ ସ୍କୁଲ୍ କଲେଜ, ଡେଇଥିଲ ଗ୍ରୀକଖ ଇପ୍ରାମ୍।
ଋଷୁଦନେ ଫିନ୍ଧଥିଲ ମିଲଗୁଡ଼ ଝଦଡ଼ ଓ ଦେଇଥିଲ ସନ୍ଧରେ
ଡକ୍ଟରା
ଋଷୁଦନେ ଖୋଜୁଥିଲ ମୁକ୍ତି ପୃଥି ଦେହ ଆଉ ମନର ବସ୍ତୁ
ଋଷୁଦନେ ଠିକ୍ଥିଲ ଭୂମପର ଛାଞ୍ଚ କାଠ ସିଧା ଓ ସନଖ
('କାଳପୁରୁଷ')

କମ୍ବା

ଯେଉଁଠି ଜୁଆର ଆସେ ପୋଡିଦେଇ ମୁହାଣର ଘାସ ଖରଦଣ
ଯେଉଁଠି ପାଣିରେ ଆସେ ଅକସ୍ମାତ ଫେଣଭାସି ଓଲଟାଇ ନଗରର
ପିଠି
ଯେଉଁଠି ପବନ ଯାଏ ଖୋଜ ଖୋଜ ସାପଗାତ ଗୁଡ଼କଙ୍କ
ଘାସବନେ
ଯେଉଁଠି ଧୂସର ସବୁ ବାଲି ଓ ତଳର ରଙ୍ଗ କଙ୍କଡ଼ା ଓ
କୋକସିଆଳ (ପିକ୍ନକ୍)

ଅନ୍ୟ ସମୟରେ ଭାବର ଏକ ମୁଖ୍ୟଅଂଶକୁ ପାଦମାନଙ୍କରେ ବ୍ୟବହାର କରାଯାଇଅଛି । ଗୁରୁପ୍ରସାଦ Neo-romantic ଧାରାକୁ ଓଡ଼ିଆ କବିତା ରାଜ୍ୟରେ ପ୍ରତିଷ୍ଠା କରିଛନ୍ତି । ଏଣୁ ଭାବର ଦ୍ରୁତଗତିଶୀଳତାକୁ ଆଖି ଆଗରେ ରଖି ସେ ତାଙ୍କର କାବ୍ୟ ସୌଷ୍ଠବକୁ ବଳିଷ୍ଠ କରିବା ନିମିତ୍ତ ଭାବର ପୁନରାବୃତ୍ତି କରି ଅସ୍ଥିରତାର ବାତାବରଣ ସୃଷ୍ଟି କରିଛନ୍ତି କମ୍ବା ନିର୍ଦ୍ଦିଷ୍ଟ ଭାବଟିକୁ ବଳିଷ୍ଠ କରି ଦେଇଛନ୍ତି । ଏହି ଶୈଳୀଟି ମଧ୍ୟ T. S. Eliotଙ୍କର ବିଶେଷ କୌଶଳ । ଗୁରୁପ୍ରସାଦଙ୍କର ନିମ୍ନୋଦ୍ଧୃତ ପଂକ୍ତି ଗୁଡ଼ିକରୁ ତାହାର ସଂକେତ ମିଳେ ।

ଚଂପାଫୁଲ ମହକରେ ଏତେ ସେ ଯେ ଦାରୁଣ କୁହୁକ
ଋକ୍ଷ୍ୟେଯାଏ ନିଆଁ ଲାଗି; ଘ୍ରାଣ ଆଉ ନିଶ୍ୱାସରେ
ଘ୍ରାଣ ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ କଣନିଆଁ ସବୁଯାଏ ଛିନ୍ନ ଭିନ୍ନ ହୋଇ
('ଚମ୍ପାଫୁଲ')

ଉପରୋକ୍ତ ଦୃଷ୍ଟାନ୍ତରୁ ଧ୍ୱନ୍ୟାନୁପ୍ରାସ କୁହାଯାଇ ପାରେ । ଏହା ବ୍ୟତୀତ ଗୁରୁପ୍ରସାଦ ମହାନ୍ତି କୌଣସି କୌଣସି କବିତାରେ କୌଣସି ଏକ ଶବ୍ଦ ବା ଶବ୍ଦପୁଞ୍ଜକୁ ଅନେକ ଥର ପ୍ରୟୋଗ କରିଅଛନ୍ତି । ଉଦାହରଣ ସ୍ୱରୂପ, 'ଗୋବର ଗଣେଶ' କବିତାରେ ନଅଥର 'ପରଝଡ଼ିବା', 'କାଳପୁରୁଷ'ରେ ପାଞ୍ଚଥର 'ହେ ଭଦ୍ରକ ସଖାମୋର କ୍ଷୀରେ ସୋଦର', 'ପ୍ରିୟ ବାନ୍ଧବୀ' କବିତାରେ ଦୁଇଥର 'ଶୀତଋତୁ ବୁଢ଼ା ହୋଇଯିବା', 'ଅଳକା ସାନ୍ୟାଲରେ' ତିନିଥର 'କାଉ ଓ ବାଦୁଡ଼'ର ବ୍ୟବହାର ହୋଇଅଛି । ନିଘୁଞ୍ଚିଆ ଶବ୍ଦଟି କବିଙ୍କର ଅତି ପ୍ରିୟତମ ଶବ୍ଦ । ଅନ୍ୟାନ୍ୟ ଶବ୍ଦମାନଙ୍କ ମଧ୍ୟରେ 'ଜହ୍ନ', 'ତାରା', 'ଦେହ', 'ମନ', 'ସମସ୍ତ' ଇତ୍ୟାଦି ପ୍ରିୟତର ଅଟନ୍ତି ।

ଗୁରୁପ୍ରସାଦଙ୍କ କବିତା ପାଠକକୁ ଆବୋରି ରଖିବାର ଗୋଟିଏ ମୁଖ୍ୟ କାରଣ ଏହି ଯେ ସେ ପ୍ରାୟ ନିର୍ଭୁଲ ଭାବେ ଛନ୍ଦ ସଯୋଜନା କରିଅଛନ୍ତି । କବିତାଗୁଡ଼ିକ ପୟାର ଛନ୍ଦରେ ରଚିତ । କେବଳ ସନେଟ୍ ତିନି ଏବଂ ଛଅକୁ ଛାଡ଼ିଲେ ଅନ୍ୟାନ୍ୟ କବିତାମାନଙ୍କର ପାଦମାନଙ୍କର ଅକ୍ଷର ସଂଖ୍ୟା ସମାନ ନୁହେ । ପାଦଗୁଡ଼ିକ ପ୍ରାୟ ଯୋଡ଼ ସଂଖ୍ୟକ ଅକ୍ଷରକୁ ନେଇ ଗଠିତ । କ୍ୱଚିତ୍ ପାଦ ବିଯୋଡ଼ ସଂଖ୍ୟକ ଅକ୍ଷର ବିଶିଷ୍ଟ ।

ସଚ୍ଚିଦାନନ୍ଦ ରାଉତରାୟ 'ପାଣ୍ଡୁଲିପି'ର ଭୂମିକା ମୁଖରେ ପ୍ରକାଶ କରିଅଛନ୍ତି ଯେ 'ପାଣ୍ଡୁଲିପି'ର ଲୋହିତ ପର୍ଯ୍ୟାୟର କବିତା ଗୁଡ଼ିକ ପୟାର ଜାତୀୟ ଛନ୍ଦରେ ରଚିତ । ତତ୍ସଙ୍ଗେ ସେ ଏହି ଛନ୍ଦର (ପୟାର ଛନ୍ଦ) ସ୍ଥିତି ସ୍ଥାପକତା ସଂପର୍କରେ ତାଙ୍କର ବିଶ୍ୱାସ ପ୍ରକାଶ କରି କହିଛନ୍ତି ଯେ ସବୁପ୍ରକାର ଭାବକୁ ପାଖାପାଖି ରଖି ପରିବେଷଣ କରିବାରେ ପୟାରଛନ୍ଦ ପରି ଆଉ ଛନ୍ଦ ନାହିଁ । ପୟାର ଛନ୍ଦ ଚଉଦ ଅକ୍ଷର ବିଶିଷ୍ଟ ଦୁଇପାଦକୁ ନେଇ ଗଠିତ । କିନ୍ତୁ ପୟାର ଜାତୀୟ ଛନ୍ଦର ସ୍ୱରୂପ କ'ଣ ସେ ସଂପର୍କରେ କିଛି ହେଲେ ସୂଚନା ଦେଇ ନାହାନ୍ତି । ତାଙ୍କର ଲୋହିତ ପର୍ଯ୍ୟାୟର କବିତାମାନଙ୍କର ଛନ୍ଦ ଯୋଜନାକୁ ଲକ୍ଷ୍ୟକଲେ ଜଣାଯାଏ ଯେ ଯେ ତାହାର ପାଦ ଗୁଡିକରେ ଚଉଦରୁ ଅଧିକ କିମ୍ବା କମ୍ ଅକ୍ଷର ମଧ୍ୟ ରହିଅଛି । ଚଉଦ ଅକ୍ଷର ବିଶିଷ୍ଟ ପାଦମାନଙ୍କର ବିଭାଜନ ଏହିପରି — ୪।୪।୬। ଯେଉଁଠି ଏହା ଅଠର କିମ୍ବା ବାଇଶି ଅକ୍ଷର-ବିଶିଷ୍ଟ ହୋଇଅଛି ତାହାର ବିଭାଜନ ଯଥାକ୍ରମେ ୪।୪।୪।୬ । ସଚ୍ଚିଦାନନ୍ଦ ରାଉତରାୟ ପାଦମାନଙ୍କର ଅକ୍ଷର ସଂଖ୍ୟା ମୁଖ୍ୟତଃ ଅଠର ଅକ୍ଷର ମଧ୍ୟରେ ସୀମିତ କରିଅଛନ୍ତି । ଯଥା :

ଲୋହିତସେତୁ । ମଂଥିବେଗେ । ଉଠାଇ ସେ । ଧୂଆଁର ନିଶାଣ
ଛୁଟିଗଲେ । ମାଲଗାଡ଼ି । ଖଡ଼୍ଗସଥା । ଜ୍ୱଳଂତ କୃପାଣ

କେତେକ ସମାନ ସଂଖ୍ୟକ ଅକ୍ଷର ବିଶିଷ୍ଟ ଧାଡ଼ିପରେ ଛନ୍ଦର ମନଟୋନକୁ ଭାଙ୍ଗିବା ପାଇଁ ସେ ମଝିରେ ମଝିରେ ପାଦର ଅକ୍ଷର ସଂଖ୍ୟା କମେଇ ଦେଇଅଛନ୍ତି । ପାଦମାନଙ୍କର ଅକ୍ଷର ସଂଖ୍ୟା ଦଶ କିମ୍ବା ଛଅ । ଗୁରୁପ୍ରସାଦ ତାଙ୍କର କବିତାଗୁଡ଼ିକୁ ପୟାର ଜାତୀୟ ଛନ୍ଦରେ ରଚନା କରିଥିଲେ ମଧ୍ୟ ରାଉତରାୟଙ୍କର ଛନ୍ଦ ଯୋଜନାଠାରୁ କେତେକ ବ୍ୟତିକ୍ରମ ତାଙ୍କର କବିତାମାନଙ୍କରେ ଦେଖାଯାଏ ।

ରାଉତରାୟ ସମାନ ସଂଖ୍ୟକ ( ପ୍ରାୟତଃ ପ୍ରାନ୍ତ ଅକ୍ଷରର ମେଳଥାଇ ) ଅକ୍ଷର ବିଶିଷ୍ଟ ପାଦମାନ ଯୋଗକରି ଦେଖିଛନ୍ତି ଯେ ଛନ୍ଦ କ୍ରମେ କ୍ଲାନ୍ତିକର ( ମନଟୋନସ୍ ) ହୋଇଉଠିଛି । ଏଣୁ ବାଧ୍ୟହୋଇ ମଝିରେ ମଝିରେ ପଦମାନଙ୍କର ଅକ୍ଷର ସଂଖ୍ୟା କମାଇ ଦେଇଅଛନ୍ତି । ଯଥା :—

ଦୂରେ ତୋର । ପଥଗୃହେଁ । ତମସାର । ଉପତ୍ୟକାପାରେ ।
ଅଯୋନ । ସଂଭୂତାପ୍ରିୟା ।-ଦେଖ ଦେଖ । ନକ୍ଷତ୍ର ମିନାରେ
ଜଳୁଅଛି । ବହ୍ନିର ସ୍ୱାକ୍ଷର
ଆରେ ପଳା । ତବ ହେତୁ । ଫେରିବାରେ । ପଥକ୍ଲାନ୍ତି ତୋର
( ରାମନାମ ସତ୍ୟହେ )

ପୁନଶ୍ଚ ଏହିଧାରା ଅବ୍ୟାହତ ରହିଅଛି । ଯେଉଁଠି କବି ପାଦମାନଙ୍କର ଅକ୍ଷର ସଂଖ୍ୟା ସମାନ ରଖିନାହାନ୍ତି ସେଠାରେ ମଧ୍ୟ ପାଦମାନଙ୍କର ପ୍ରାନ୍ତ ଅକ୍ଷରର ମିଳନ ପ୍ରତି ଗୁରୁତ୍ୱ ଦିଆଯାଇଅଛି । ଗୁରୁପ୍ରସାଦ ମହାନ୍ତିଙ୍କର ଦୁଇଟି ସିନେଟ୍‌କୁ ବାଦଦେଲେ ଅନ୍ୟ କବିତାମାନଙ୍କରେ ପାଦର ଅକ୍ଷର ସଂଖ୍ୟା-ମାନଙ୍କରେ ସ୍ଥିରତା ନାହିଁ । ଯେଉଁଠି ପାଖାପାଖି କେତୋଟି ପାଦର ଅକ୍ଷର ସଂଖ୍ୟା ସମାନ ହୋଇଅଛି ତାହା ଆକସ୍ମିକ । ଏଣୁ ମନଟୋନିର ପ୍ରଶ୍ନ ଉଠେନାହିଁ । ସଚ୍ଚିଦାନନ୍ଦ ରାଉତରାୟ ଅନ୍ୟକେତେକ କବିତା ରଚନା କରିଅଛନ୍ତି ଯେଉଁ ଗୁଡ଼ିକର ପାଦ ସଂଖ୍ୟା ଆଦୌ ସ୍ଥିରନୁହେଁ । କିନ୍ତୁ ପାଦମାନଙ୍କର ଅନ୍ତ୍ୟକ୍ଷର ମେଳର ବିଶେଷ ଗୁରୁତ୍ୱ ରହିଛି ।

ମୋଟଉପରେ, ଗୁରୁପ୍ରସାଦ ମହାନ୍ତି ଛନ୍ଦ ଯୋଜନାରେ କେତେକ ବିଶେଷତ୍ୱ ରହିଛି ତାହାହେଲା ସେ ପ୍ରାନ୍ତ ଅକ୍ଷର ମେଳ ପ୍ରତି ଗୁରୁତ୍ୱ ଆରୋପ କରିନାହାନ୍ତି । ତାହା ହୁଏତ ଆକସ୍ମିକ

ଭାବେ ମିଳିଯାଇଛି । କବିତାର ପାଦମାନ ରାଧାନାଥଙ୍କ କବିତାର ପାଦମାନଙ୍କ ପରି କ୍ଷୁଦ୍ରାକୃତି । 'ଛୁଟିର ଖବର' କବିତାରେ ଅଠରଶ ଅକ୍ଷର ବିଶିଷ୍ଟ ପାଦର ବ୍ୟବହାର କରାଯାଇଅଛି । ସେହିପରି 'ସିନ୍ଧୁଆ'ରେ ଚଉଦଟିଶ ଅକ୍ଷର ବିଶିଷ୍ଟ ପାଦର ବ୍ୟବହାର କରାଯାଇଅଛି । ବାକ୍ୟଗଠନରେ ସେ ସରଳ ବାକ୍ୟ ଅପେକ୍ଷା ଯୌଗିକ କିମ୍ବା ଜଟିଳ ବାକ୍ୟଗୁଡ଼ିକୁ ବହୁପରିମାଣରେ ବ୍ୟବହାର କରିଅଛନ୍ତି ।

ଆଧୁନିକ କବିତାର ଭାଷା ଗଦ୍ୟଧର୍ମୀ ହୋଇଥିବାରୁ ଏବଂ ଏଥିରେ ପଦ୍ୟର ନିର୍ଦ୍ଦିଷ୍ଟ ନିୟମମାନ ଦେଖାଯାଉ ନ ଥିବାରୁ, ସର୍ବୋପରି ଗଦ୍ୟ ସଂପର୍କରେ ଆମର ଏକ ନ୍ୟୂନଧାରଣା ଥିବାରୁ ଆମେ ହଠାତ୍ ଧାରଣା କରିବସୁ ଯେ ଆଧୁନିକ କବିତା ଛନ୍ଦହୀନ ତଥା ଲାଳିତ୍ୟହୀନ । ଏହି ଧାରଣାର ବଶବର୍ତ୍ତୀ ହୋଇ ଅନେକ କବି ହେବାର ଆଶା ପୋଷଣ କରିବସନ୍ତି । ଗୁରୁପ୍ରସାଦ ମହାନ୍ତିଙ୍କ ଛନ୍ଦର ନିୟମ, କବିତାରେ ଅନୁପ୍ରାସର ବହୁଳ ପ୍ରୟୋଗ (ଯାହା ଫଳରେ କ ପ୍ରାନ୍ତ ଅକ୍ଷରର ମିଳନକୁ ଗୌଣ ବୋଲି ପାଠକ ଧରିବାକୁ ବାଧ୍ୟ ହୁଏ) ସର୍ବୋପରି ଭାବ ତଥା ଶବ୍ଦର ପୁନରାବୃତ୍ତି ଇତ୍ୟାଦି ପ୍ରାଚ୍ୟ ପାଶ୍ଚାତ୍ୟ ଶୈଳୀର ଶିଳ୍ପ କଳାର ମିଶ୍ରଣଦ୍ୱାରା କବିତାର ଯେଉଁ ଅଭିନବ ରୂପଟିକୁ ଫୁଟି ଉଠିଛି, ତାହାର ପ୍ରଭାବରେ ପାଠକ ନିଇଶୁଅ ପରି ତନ୍ମୟ ହୋଇଯାଏ । ତାଙ୍କର କବିତାରେ ତଥା ପରିମାଣରେ ପ୍ରଚୁରତା ନ ଥିଲେ ମଧ୍ୟ ସେ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ଶିଳ୍ପୀ ।

## ॥ ଗୁରୁପ୍ରସାଦଙ୍କ କବିତା ଓ ମୁଁ ॥

ମୋ ଭଳି ଯେଉଁମାନେ ଆଧୁନିକ ରୀତିରେ ପ୍ରଥମ କରି କବିତା ଲେଖା ଶିଖୁଥିଲେ, ସେମାନଙ୍କର ଦ୍ରୋଣଗୁରୁ ଥିଲେ ସଚ୍ଚି ରାଉତରାୟ । ସଚ୍ଚି ରାଉତରାୟଙ୍କୁ ଛାଡ଼ି ଦେଲେ ଆଉ ଜଣେ ଯିଏ ହଠାତ୍ ତରୁଣ କବିର ମନକୁ ଅଚ୍ଛନ୍ନ କରି ବସୁଥିଲେ, ସେ ଥିଲେ ଗୁରୁ ପ୍ରସାଦ ମହାନ୍ତି । ନୂଆ କରି କଲେଜ ପଢ଼ିଲା ବେଳେ (୧୯୬୪) ଗୁରୁପ୍ରସାଦଙ୍କ କବିତା ସହ ମୋର ପରିଚୟ । ସେତେବେଳେ 'ଓ୍ୱେଷ୍ଟ-ଲ୍ୟାଣ୍ଡ' ପଢ଼ି ନ ଥିବା କବି ଅଧୁନିକ କବି ସମାଜରେ ଥିଲେ ଅପାଂକ୍ତେୟ । 'ଓ୍ୱେଷ୍ଟଲ୍ୟାଣ୍ଡ' ପଢ଼ିଦେଲେ କବିତ୍ୱର ପରୀକ୍ଷାରେ ପାସ୍ ହୋଇଯିବ, ଏ ବିଶ୍ୱାସ ନେଇ ପ୍ରଥମେ ପଢ଼ିଲି ଜ୍ଞାନୀନ୍ଦ୍ର ବର୍ମଙ୍କ 'ପୋଡ଼ାଭୂଇଁ' । କାରଣ ଏଲିଅଟଙ୍କ ଇଂରେଜୀ କବିତା ପଢ଼ି ବୁଝିବାର ଶକ୍ତି ନ ଥିଲା ମୋର । 'ପୋଡ଼ା ଭୂଇଁ'ରୁ କିଛିଟା ଆଭାସ ପାଇଲି, କିନ୍ତୁ ଅନୁପ୍ରାଣିତ ହେଲି ନାହିଁ । କାରଣ ମୋର କ୍ଷୁଦ୍ର କାବ୍ୟିକ ବିଶ୍ୱ ଭିତରେ 'ଓ୍ୱେଷ୍ଟ-ଲାଣ୍ଡ'ର ବିସ୍ତୃତିକୁ ଧରି ରଖିବା ସହଜ ନ ଥିଲା । ମଫସଲର ନାଡ଼ୀ ନକ୍ଷତ୍ର ସହିତ ପରିଚିତ ଜଣେ ବାଳକ ପକ୍ଷରେ ଏ ଯେମିତି ଏକ ଅଭୂତପୂର୍ବ ଅନୁଭବ । 'ଓ୍ୱେଷ୍ଟଲ୍ୟାଣ୍ଡ'ର ଅନୁବାଦ ପଢ଼ି କଣ ମୁଁ ପାଇଲି ହୁଏତ କହି ପାରିବିନି । କିନ୍ତୁ ମନରେ ବଡ଼ ଅତୃପ୍ତି ରହିଗଲା ।

ସେତେବେଳେ ଯେଉଁମାନଙ୍କର କବିତା ପତ୍ର ପତ୍ରିକା ପୃଷ୍ଠାରେ ଦେଖିବାକୁ ମିଳୁଥିଲା, ସେମାନଙ୍କ ଭିତରୁ ଅନ୍ୟତେ ବହୁତେ ଥିଲେ ଗୁରୁ-

ପ୍ରସାଦଙ୍କ ଗୀତିକାବ୍ୟକବିତା ପ୍ରତି ଅନୁରକ୍ତ, କେତେକ ପୂର୍ବାପର ଭକ୍ତ । ତେଣୁ ଅନେକ କବିଙ୍କ କବିତାର ସାଧାରଣ ଆଲୋଚନା ବେଳେ ଗୁରୁପ୍ରସାଦଙ୍କ କାବ୍ୟମଧ୍ୟ ଅନୁକୃତିଧର୍ମୀ ଛନ୍ଦର ପ୍ରଭାବ କଥା ଶୁଣା ଯାଉଥିଲା । ସୌଭାଗ୍ୟକୁ ମୋ ହାତରେ ଆସିକ ପଡ଼ିଗଲା 'ନୂତନ କବିତା' । ଗୁରୁପ୍ରସାଦଙ୍କ କବିତାଗୁଡ଼ିକ ବାରଂବାର ପଢ଼ିଲି । ମୁଗ୍ଧ ହେଲି । ଗୋଟାଏ ଗଭୀର ଭାବାବେଶରେ ମୁଁ ବୁଲି ବୁଲିଲି ଏକ ଅନନୁଭୂତ ଜଗତରେ । କବିତାଗୁଡ଼ିକ ମୋର ପରିଚିତ ପରିବେଶ ଭିତର ଦେଇ କେତେବେଳେ କେଉଁ ଏକ ଅଜାଣତ ରାଜ୍ୟକୁ ମୋତେ ଟାଣି ନେଲି, ମୁଁ ଜାଣି ପାରିଲି ନାହିଁ । ଆଜି ବୁଝୁଛି, ସେ ଥିଲି ଗଭୀର କାବ୍ୟ ରସାନୁଭବ, କବି ସହ ଏକାତ୍ମବୋଧ । ମୁଁ କେଉଁ ବୁଝି ପାରିଲି ନାହିଁ ଯେ ମୁଁ ପଢୁଛି ଏଲିଅଟ୍ଙ୍କ କବିତାର ଓଡ଼ିଶୀ ସଂସ୍କରଣ । ପରିବେଶ ତ ପୂର୍ବାପର ଓଡ଼ିଶାର, ଉପରକୁ ଉଠିଲେ ଭାରତର । ମନେ ହେଉଥିଲା ଯେମିତି କାବ୍ୟବସ୍ତୁ, ଚରିତ୍ର, ରୂପକଳ୍ପ, ପ୍ରତୀକ, କେଉଁଥିରେ ବିଦେଶୀ ଗନ୍ଧ ନାହିଁ । ସଂପୂର୍ଣ୍ଣ ଏକ ଏକ ମୌଳିକ କବିତା । ସବୁଠାରୁ ମନକୁ ବେଶୀ ଛୁଉଁଥିଲା, କବିତାର ଛନ୍ଦ, ଯାହାଥିଲା ଓଡ଼ିଶୀ ଗଂଧରେ ଭରା । ସେଥିପାଇଁ ବୋଧହୁଏ କେତେକ ପ୍ରସିଦ୍ଧ କବିତାର ବହୁ ଲାଇନ ମନେ ରହି ଯାଉଥିଲା ଆପଣା ଛୁଏଁ । ଆମର ପରିଚିତ ପରିବେଶର ରୂପ, ରସ, ଗଂଧ ଭିତର ଦେଇ ପାଶ୍ଚାତ୍ୟ ଜଗତର ନିଃସଂଗ ଅସହାୟତା, ଗ୍ଲାନିବୋଧ ନିକଟରେ ପହଂଚି ଯିବା ଏତେ ସହଜ, ଅନୁଭବ କରି ପାରି ନ ଥିଲି କେବେ । ହୁଏତ ମୋ ପରି ଆଉ କେତେକ ନୂତନ କବି ଗୁରୁପ୍ରସାଦ ମହାନ୍ତିଙ୍କ କବିତା ମାଧ୍ୟମରେ ଏଲିଅଟ୍ଙ୍କ କାବ୍ୟ ଜଗତ ସହ ପରିଚିତ ହୋଇଥିବେ ।

•

କମ୍ କବିତା ଲେଖି ବେଶି ପ୍ରତିଷ୍ଠାର ଅଧିକାରୀ ହୋଇଛନ୍ତି କବି ଗୁରୁପ୍ରସାଦ । ତାଙ୍କର ପ୍ରତ୍ୟେକ କବିତା ଇନ୍ଦ୍ରଜାଲ ପରି ପାଠକ ମନକୁ ଗଭୀର ଭାବେ ଛୁଇଁ ପାରେ, ଆଲୋଡ଼ିତ କରି ପାରେ । ସେ କବିତା ଭିତରୁ କେତେକ ମନେ ହୁଅଂତି ଦେଶୀ, କେତେକ ପୁଣି ବିଦେଶୀ । ଅବଶ୍ୟ

ଉପାଦାନ ଦୃଷ୍ଟିରୁ । କିନ୍ତୁ ଉପସ୍ଥାପନ ଶୈଳୀ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଏହି ସ୍ୱତନ୍ତ୍ର ଶୈଳୀ ହିଁ ତାଙ୍କୁ କାବ୍ୟ ଜଗତରେ ପ୍ରତିଷ୍ଠିତ କରି ପାରିଛି । ପ୍ରତ୍ୟେକ ତରୁଣ କବିର ହୃଦୟକୁ ଅଧିକାର କରିବାର ସୁଯୋଗ ସୃଷ୍ଟି କରିଛି । ତାଙ୍କର ଶ୍ରେଷ୍ଠ କବିତା 'କାଳ ପୁରୁଷ' ବହୁ ଭାବରେ ଏଲିଅଟ୍ ପ୍ରଭାବାନ୍ୱିତ ହେଲେ ବି ବାହ୍ୟତଃ ଏକ ମୌଳିକ କବିତାର ଗୌରବ ଲାଭ କରିପାରେ । ଏପର୍ଯ୍ୟନ୍ତ ପ୍ରତ୍ୟେକ କବି, ପାଠକ ମୁକ୍ତ କଣ୍ଠରେ ସ୍ୱୀକାର କରି ଆସିଛନ୍ତି ଯେ ଏଲିଅଟଙ୍କ କାବ୍ୟ ଭାବନାକୁ ସଂପୂର୍ଣ୍ଣ ନିଜସ୍ୱ କରିବାରେ ସଫଳକାମ ହୋଇ ପାରିଥିଲେ କେବଳ ଗୁରୁପ୍ରସାଦ ମହାନ୍ତି । କବିତା ଗୁଡ଼ିକରେ ମୌଳିକତାର ପ୍ରତିଫଳନ ଏତେ ବେଶି ଯେ ଆହରଣ କେଉଁ ଆଡ଼େ ଲୁଚି ରହିଯାଏ । ପାଠକ କବିତାର ରସ ସ୍ରୋତରେ ଭାସିଗଲା ବେଳେ ଆହରଣର ସତ୍ତା ପାଏ ନାହିଁ । 'ପ୍ରଜ୍ଞା'ର ସଂପାଦକ ଗୁରୁ ବାବୁଙ୍କ କବିତାକୁ ଖାଣ୍ଟି ଓଡ଼ିଆ କବିତା ବୋଲି ଘୋଷଣା କରିଥିଲେ । ଆଜି ପର୍ଯ୍ୟନ୍ତ ବି କେହି ଏହି ମତକୁ ଦୃଢ଼ତାର ସହିତ ଖଣ୍ଡନ କରି ପାରି ନାହାନ୍ତି । 'ଗୋବର ଗଣେଶ', 'ହରେକୃଷ୍ଣ ଦାଶ' ଆଦି ଏଲିଅଟ୍ ପ୍ରଭାବପୁଷ୍ଟ, ଜଟିଳ ଚରିତ୍ର ଗୁଡ଼ିକର ଦେହରୁ ବିଦେଶୀ ଗନ୍ଧ ସହଜରେ ବାରି ହୁଏ ନାହିଁ ।

ଆଧୁନିକ ଯୁଗରେ ରୋମାଣ୍ଟିକ୍ ପରମ୍ପରାକୁ ଭାଙ୍ଗିବାର ସଚେତନ ପ୍ରୟାସ କରା ଯାଉଥିଲେ ବି ତାହା ସବୁ ସମୟରେ ସମ୍ଭବପର ହୋଇ ପାରୁନାହିଁ । କବିମାନଙ୍କ ଅଜାଣତରେ ବହୁ କବିତାର ଗଠନ ଶୈଳୀରେ ରୋମାଣ୍ଟିକ୍ ପ୍ରଭାବ ଆସନ ଜମାଇ ବସୁଛି । ସଚ୍ଚି ରାଉତରାୟଙ୍କ କେତେକ ବାସ୍ତବବାଦୀ କବିତାରେ ରୋମାଣ୍ଟିକ୍ ସ୍ୱର ଫୁଟିଛି । ସେହିପରି ଗୁରୁବାବୁ ରୋମାଣ୍ଟିକ୍ ଶୈଳୀରେ ରିଅଲିଷ୍ଟିକ୍ କବିତା ଲେଖିବାର ସଚେତନ ପ୍ରୟାସ କରିଛନ୍ତି । ତାଙ୍କର କବିତା ଗୁଡ଼ିକ ବାହ୍ୟତଃ ଏକ ଏକ ରୋମା-ଣ୍ଟିକ୍ କବିତା ପରି ଜଣା ପଡ଼ୁଥିଲେ ମଧ୍ୟ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀରେ ତୀବ୍ର ବ୍ୟଙ୍ଗଧର୍ମିତା ପରିଲକ୍ଷିତ । ଖାଣ୍ଟି ରୋମାଣ୍ଟିକ୍ ପରି ଜଣା

ପଢୁଥିବା 'ଚଂପା ଫୁଲ୍', 'ଶଠି', 'ଶାରଦ ରାତିରେ ଜହ୍ନ', 'ଜଟପାତ କପୋତୀ' ଆଦି କେତେକ କବିତାରେ ଗୁରୁ ପ୍ରସାଦ ମହାନ୍ତିଙ୍କ ପ୍ରକୃତ କବି ସତ୍ତାକୁ ଦେଖିହୁଏ । ଏଇ କବିତା ଗୁଡ଼ିକ ମଧ୍ୟ —ପୂର୍ବବର୍ତ୍ତୀଙ୍କ ରୋମାଣ୍ଟିକ୍ କବିତାଠାରୁ ସଂପୂର୍ଣ ଭିନ୍ନ । ଏଗୁଡ଼ିକର ସ୍ୱତନ୍ତ୍ର ସୌରଭ ତଥା ଚିତ୍ରଧର୍ମିତା ପାଠକକୁ ଏକ ନୂତନ ସୌନ୍ଦର୍ଯ୍ୟର ଜଗତ ସହିତ ପରିଚିତ କରାଏ । 'ପ୍ରିୟ ବାଂଧବୀ', 'ଅଲକା ସାନ୍ୟାଲ୍', ପରି କବିତାର ବ୍ୟଂଗାତ୍ମକ ଦୃଷ୍ଟି ଛଳେ ମଧ୍ୟ କବିର ଆନ୍ତରିକତା ପ୍ରଚୁର । ଆଧୁନିକ କବିତାର ଏକ ପ୍ରଧାନ ଉପାଦାନ ବ୍ୟଂଗ ଗୁରୁ ବାବୁଙ୍କ ରୋମାଣ୍ଟିକ୍ କାବ୍ୟ ପ୍ରବାହ ତଳେ ତଳେ ଅନ୍ତଃସ୍ରୋତ ପରି ପାଠକ ଚିତ୍ତକୁ ଆକ୍ରାନ୍ତ କରି ବସେ । କବିକୁ ନୂତନ ଦିଗ୍‌ଦର୍ଶନ ଦିଏ । ସେଇଥି ପାଇଁ ତ ସେ ନୂତନ କବିର ସକଳ ଶ୍ରଦ୍ଧା ଆକର୍ଷଣ କରି ପାରିଛନ୍ତି ।

୩

ଆଜ ସତୁରୀ ଦଶକର ଶେଷ ପର୍ଯ୍ୟାୟରେ ଆଧୁନିକ କବିତା କ୍ଷେତ୍ରରେ ବହୁ ନୂତନ ପରୀକ୍ଷା ଦେଖା ଦେଇଛି । ଫଳରେ କବିତା ପଦ୍ୟ ଧର୍ମିତା ଛାଡ଼ି କ୍ରମେ ନୀରସ ରୁକ୍ଷ ଗଦ୍ୟରେ ପରିଣତ ହେବାକୁ ବସିଲାଣି । ଗୁରୁପ୍ରସାଦ ମହାନ୍ତିଙ୍କ କବିତା ଏକସମୟରେ ପାଠକମାନଙ୍କୁ ଗଭୀରଭାବେ ଆକୃଷ୍ଟ କରିଥିଲା, ତାର ପଦ୍ୟଧର୍ମିତା ପାଇଁ । ଅନେକ ପାଠକ କବିତାର ସମସ୍ତ ପ୍ରତୀକ, ରୂପକଳ୍ପ ବା ପରିବେଶ ସୃଷ୍ଟିକୁ ବୁଝି ନ ପାରିଲେ ବି ସାବଲୀଳ ଭାଷା ଯୋଜନା ଓ ଛନ୍ଦୋମୟତାରେ ମୁଗ୍ଧ ହୋଇ ପଢୁଥିଲେ । ନୂତନ ଛନ୍ଦମୟ କବିତା ପ୍ରଥମେ ପାଠକକୁ ଏପରି ଆକୃଷ୍ଟ କରୁଥିଲା ଯେ ସେ ବାରଂବାର କବିତାକୁ ପଢ଼ିବାକୁ ଆଗ୍ରହୀ ହେଉଥିଲା । ଫଳରେ କବିତାର ଅର୍ଥ ତା ନିକଟରେ କ୍ରମଶଃ ସ୍ପଷ୍ଟ ହୋଇ ଉଠୁଥିଲା । ଅଂଧକାର ଭିତରେ କିଛି ସମୟ ଚାଲିଗଲେ ରାସ୍ତା ଟିକିଏ ପରିଷ୍କାର ଦିଶେ ।' କିନ୍ତୁ ଅଂଧକାରରେ ଚାଲିବାର ଅଭ୍ୟାସ ମୂଳରୁ ସୃଷ୍ଟି ନ ହେଲେ ପଥିକଠାରୁ ରାସ୍ତା ରହିଯାଏ ଦୂରରେ । ଆଜିର କବିତା କ୍ଷେତ୍ରରେ ପାଠକମାନଙ୍କର ଅବସ୍ଥା ପ୍ରାୟତଃ ସେଇଆ । ସେମାନେ ଏବେବି କବିତାର କଠିନ ଅତି ଦୁର୍ବୋଧ ରୁକ୍ଷ

ଗଦ୍ୟର ଧାଡ଼ିକୁ ନ ପଢ଼ି କିଂବା ପଢ଼ିବାର ଚେଷ୍ଟା କରି ବିରକ୍ତିରେ ଛାଡ଼ି ଦେଇଛନ୍ତି । କାରଣ କବିତାର ପ୍ରାଥମିକ ଆବେଦନ ସେମାନଙ୍କ ନିକଟରେ କିଛି ରହୁନାହିଁ । ଏଇ ଅବସ୍ଥାକୁ ଅବଶ୍ୟ ଆଜି ବହୁ କବି ହୃଦୟଙ୍ଗମ କଲେଣି । ଫଳରେ ବହୁ ଦିନ ଧରି ଛାଡ଼ି ଆସିଥିବା ମୁକ୍ତଛନ୍ଦ ଓ ଗଦ୍ୟଛନ୍ଦକୁ ସେମାନେ ଫେରାଇ ଆଣିଲେଣି । ଫେରାଇ ଆଣିଲେଣି ପୁଣି ଅଧିକ ସଫଳତାର ସହିତ । ସାଂପ୍ରତିକ କବିତାର ଛନ୍ଦ ଯୋଜନା ଦିଗରେ ସେମାନଙ୍କର ଏ ପ୍ରଚେଷ୍ଟା ଅଭିନନ୍ଦନୀୟ । ଏତିକି ବେଳେ ସେମାନେ ନିଶ୍ଚୟ ସ୍ମରଣ କରୁଥିବେ ଗୁରୁବାବୁଙ୍କ କବିତାର ମାଧୁର୍ଯ୍ୟକୁ । ବ୍ୟକ୍ତିଗତ ଭାବରେ ମୁଁ ମୋର କବିତାକୁ ଗଦ୍ୟରାଜ୍ୟରୁ ଫେରାଇ ଆଣି ନୂତନ ଛନ୍ଦରେ ସଚଳ କରାଇବାର ଚେଷ୍ଟା କରିଛି । ଏଇଟା ବୋଧହୁଏ ଗୁରୁବାବୁଙ୍କ କବିତାର ପରୋକ୍ଷ ପ୍ରଭାବ । ଅନ୍ୟ କେତେକଙ୍କଠାରେ ମଧ୍ୟ ଏ ପ୍ରଭାବ ମୁଁ ଅନୁଭବ କରୁଛି । ଯଦିଚ ଗୁରୁବାବୁଙ୍କ ସମୟର କାବ୍ୟିକ ଉପାଦାନ ଆଜିର କବିତାରେ ପ୍ରାୟ ଅଚଳ ।

କବି ଗୁରୁପ୍ରସାଦ ଖଣ୍ଡିଏ କବିତା ବହି ଲେଖି ଅଟକିଗଲେ ଅଧବାଟରେ । ଅଟକିଗଲେ ବୋଲି ସମସ୍ତେ ଦୁଃଖ ପ୍ରକାଶ କରନ୍ତି— ରସଜ୍ଞ ପାଠକଠାରୁ ଆରମ୍ଭ କରି ସାଂପ୍ରତିକ କବି ପର୍ଯ୍ୟନ୍ତ । ଆଜି ଅନେକ କବି ଗୁରୁପ୍ରସାଦ ମହାନ୍ତିଙ୍କୁ ଅତିକ୍ରମ କରି ବହୁଦୂର ଆଗେଇଆସିଲେଣି ; ତଥାପି ଏଇ ବାଟୋଇଟିକୁ କେହି ଭୁଲି ନାହାନ୍ତି । ଭୁଲି ପାରୁ ନାହାନ୍ତି । କାରଣ ସେ ଯେତିକି ବାଟ ଚାଲିଥିଲେ, ସେଥିରେ ଥିଲା ଚାଲିବାର ପୂର୍ଣ ଗୌରବ । ତାଂକ ଚଲା ବାଟରେ ଅନୁଭବ କରିହୁଏ ମାଦକଭରା ଜ୍ୟୋତ୍ସ୍ନାର ସ୍ନିଗ୍ଧ ସୌନ୍ଦର୍ଯ୍ୟ, ତା ସହିତ ଚନ୍ଦ୍ରର କଳଙ୍କ । ଏକା ବେଳକେ ଏ ଦୁଇଟିର ଅନୁଭବ ଚମତ୍କାର ନିଶ୍ଚୟ ।

—ନୀଳାଦ୍ରି ଭୂଷଣ ହରିଚନ୍ଦନ



ଗୁରୁପ୍ରସାଦଙ୍କ ପ୍ରଥମ କବିତା ବହି 'ନୂତନ କବିତା' ଯେତେବେଳେ ବାହାରିଥିଲା, ସେଇ ପାଖାପାଖି ସମୟରେ ମୋର ଜନ୍ମ । ଅନ୍ୟମାନଙ୍କ ପରି ଆଧୁନିକ କାଳର ଯେଉଁ କବିମାନଙ୍କ ସହ ଆମର ପାଠ୍ୟକ୍ରମ-ଭିତ୍ତିକ ପରିଚୟ ଥିଲା, ସେମାନଙ୍କ ମଧ୍ୟରୁ ମାନସିଂହଙ୍କ 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ଓ 'ଗୋପ ପ୍ରୟାଣ' ଏବଂ ଗଡ଼ନାୟକଙ୍କ 'କୈଶୋରିକା' କାବ୍ୟଗ୍ରନ୍ଥ ଆଦିର ମୁଁ ଜଣେ ଅନୁରାଗୀ ପାଠକ ଥିଲି । ଏହା ମୋ ହାଇସ୍କୁଲ ପଢ଼ାବେଳର କଥା । ଆଧୁନିକ କବିତା ବୋଲି ଦଶମ ଶ୍ରେଣୀରୁ ମୁଁ ଯାହା ବୁଝୁଥିଲି ବା ଲେଖୁଥିଲି, ତାହା କୌଣସି ପୁରୁଣା କଲେଜ ମାଗାଜିନ୍ ବା ରବିବାସରୀୟ ପ୍ରଜାତନ୍ତ୍ରର କିଛି ପଦ ଅମେଳଥିବା ବେଢ଼ଙ୍ଗି ଆ-ଙ୍ଗିକର କବିତା । ସେଠି ଥିବ କିଛି ରୋମାଂଚ, କିଛି ସ୍ମୃତି ବା କିଛି ଉଚ୍ଚତର ଆଦର୍ଶ—ମୋଟା ମୋଟି କବିତା କଳ୍ପନାର ଏକ ଗାଦ୍ୟିକ ରୂପକଥା ହୋଇଥିବ ! କବିତା ଲେଖୁଥିଲି ଲୁଚିକି ଲୁଚିକି । କଲେଜ ଛାତ୍ରାବାସର ମୁଖପତ୍ର 'ସାଗରିକା'ରେ ମୋର ପ୍ରଥମ ପ୍ରକାଶିତ କବିତା 'ସ୍ୱପ୍ନ' (୧୯୭୩), ଆଉ ୩।୪ଟି କବିତା ସେଇ-ଥିରେ ବାହାରିଥିଲା ଅନ୍ୟବନ୍ଧୁଙ୍କ ନାଁରେ । ସେତେବେଳକୁ ମୋର ପ୍ରୟୋଗବାଦୀ କାବ୍ୟଧାରାର କୌଣସି କବି ବା କବିତା ପୁସ୍ତକ ସହ ପରିଚୟ ନ ଥିଲା ପତ୍ର ପତ୍ରିକା ବ୍ୟତୀତ । ତା'ଛଡ଼ା ଇଣ୍ଟର-ମିଡିଏଟ୍ ବିଜ୍ଞାନର ଛାତ୍ର ହିସାବରେ କବିତା ଲେଖା ପାଇଁ ସମୟ ବା କାହିଁ ? ହଁ ! ସେଇ ଚେତ୍ରଗୀ ମସିହା ହେବ, ଏକ ଉପର ଶ୍ରେଣୀ ବନ୍ଧୁଙ୍କଠୁ ମାଗି ଆଣିଥିବା କବିତା ବହିଟି ଥିଲା 'ସମୁଦ୍ର ସ୍ନାନ' ।

'ସମୁଦ୍ର ସ୍ନାନ'ରୁ ଗୁରୁ ପ୍ରସାଦଙ୍କ ସହ ପ୍ରଥମ ପରିଚୟ । ଗୁରୁପ୍ରସାଦ ନାମଧାରୀ ମଣିଷଟିକୁ ଏ ଯାଏ ବି ଦେଖିନି । ତେବେ

ସେ ସମୟରେ ପତ୍ର ପତ୍ରିକା ପୃଷ୍ଠାରେ ଗୁରୁପ୍ରସାଦଙ୍କ ନାଁ ଦେଖିନଥିଲି। ପରେ ଜାଣିଲି ସେ ଆଉ ଲେଖାଲେଖି କରୁନାହାନ୍ତି। ହଁ! ସେଇ ପାଖାପାଖି ସମୟରେ ଗୁରୁପ୍ରସାଦ ବୋଧେ 'ସମୁଦ୍ର ସ୍ନାନ' ଲାଗି କେନ୍ଦ୍ର ଏକାଡ଼େମୀ ସାହିତ୍ୟ ପୁରସ୍କାର ପାଇଲେ। ମୋ ପାଇଁ ତାହା ଥିଲା ନିଶ୍ଚୟ ଭାବେ ଏକ କୌତୁକପ୍ରଦ ବିହ୍ୱଳ ଘଟଣା ଏବଂ ଅଭିଜ୍ଞତା। ସେ ସମୟରେ 'ଚମ୍ପା ଫୁଲ', 'କାଳ ପୁରୁଷ', 'ଅକ୍ରୁର-ଉଦ୍ଧବୀଚ' ଆଦି କବିତା ବର୍ତ୍ତମାନ ପତ୍ରିକା ମୋତେ ଘାରି ରହିଥିଲା। ମୋ ସାଙ୍ଗରେ ନୂଆ ନୂଆ କବିତା ଓ ଗପ ଲେଖୁଥିବା ଓ ଚର୍ଚ୍ଚା କରୁଥିବା ବନ୍ଧୁମାନଙ୍କ ମେଳରେ ମୁଁ 'ସମୁଦ୍ର ସ୍ନାନ'ର ପ୍ରାୟ ସବୁ କବିତା ଆବୃତ୍ତି କରୁଥିଲି ଏବଂ କେବେ କେବେ ଏକା ଏକା ପ୍ରକୋଷ୍ଠ ଦରଜା ବନ୍ଦ କରି ମଧ୍ୟ। ସେବେ ଯେଉଁ କେଇଧାଡ଼ି ମୋତେ ବେଶୀ ବିହ୍ୱଳ କରିଥିଲା ତାହା ସେଇ 'ହେ ଅକ୍ରୁର ହେ ଉଦ୍ଧବ, ପରିଚ୍ଛେଦଟି। କହିବା ବାହୁଲ୍ୟ, ଅନର୍ଗ ଶେଷ ବର୍ଣ୍ଣ ସୁଦ୍ଧା ପ୍ରୟୋଗ-ବାଗ ଧାରର କବିତାଗୁଡ଼ିକ ସହ ମୋର ଏକ ପ୍ରାଥମିକ ପରିଚୟ ସ୍ଥାପିତ ହୋଇ ସାରିଲାଣି।

କବିତା ଲେଖା ହେଉଥାଏ। କିନ୍ତୁ କବିତାର ଥିଓରୀ ସମ୍ପର୍କରେ ସେବେ ବି ଜାଣିବାର ସୁଯୋଗ ନ ଥିଲା ଏତେ ବେଶୀ। ତଥାପି ପତ୍ର ପତ୍ରିକାକୁ ମୁଁ କବିତା ପଠାଉଥିଲି। ବାହାରୁ ଥିଲା ବି କିଛି କିଛି। ତେବେ ପ୍ରାରମ୍ଭରୁ ଏକ କୈଶୋରସୁଲଭ ଚପଳ ମନସ୍ତତ୍ତ୍ୱ ମୋତେ ତାଙ୍କ କବିତାର ପ୍ରେମରେ ପକାଇ ଥିଲା। ନ ହେଲେ ମୁଁ କେମିତି ଲେଖିଥାନ୍ତି—"କିନ୍ତୁ 'ସମୁଦ୍ର ସ୍ନାନ'ର ନାୟକ ପରି/'ଆଖିର କପୋତ ମୋର'/କାଟେ ଆଜ ତୋ ଲାଗି ଲୁହର

ଫସଲ,/ତୋ' ପାଇଁ ମୋ କ୍ଷେତ ମାଟି ରଙ୍ଗସ୍ଥାନ ଅନେକ ଧୂସର ।"
(ଅରୁନ୍ଧତୀ ପାଇଁ ଚୋଟିଏ କବିତା'—ସ୍ୱର୍ଣ୍ଣ କିରଣ : ଫେବୃୟାରୀ ୧୯୭୫ ) ।

କେତେ ଥର "ୱେଷ୍ଟ୍‌ଲ୍ୟାଣ୍ଡ୍"କୁ 'କାଳ ପୁରୁଷ' ସହ ମିଳେଇ ପଢିଛି । ମନେ ମନେ ଗୁରୁପ୍ରସାଦଙ୍କ ଶକ୍ତି କଳନା କରିଛି । ଏ ଭିତରେ ଅନ୍ୟ କବିଙ୍କୁ ବି ଅଧ୍ୟୟନ କରିଛି ତେଣୁ ଏବଂ ପରସ୍ପରଙ୍କ କାବ୍ୟ—କୃତି ଭିତରେ ସୂକ୍ଷ୍ମ ବ୍ୟବଧାନକୁ ଲକ୍ଷ୍ୟ କରିଛି ।

ଗୁରୁପ୍ରସାଦଙ୍କ କ୍ଲାସରୁମ୍ ସମାଲୋଚକ ହେଲା ପରେ, ସ୍ନାତକୋତ୍ତର ଶ୍ରେଣୀରେ ଓଡ଼ିଆ ସାହିତ୍ୟ ଅଧ୍ୟୟନ ସମୟରେ । ଓଡ଼ିଆ କବିତାର ଧାରା ଓ ନିଜ କବିତା ଲେଖା ପ୍ରତି ସଚେତନ ହେଲା ପରେ ପ୍ରୟୋଗବାଦୀ ପରମ୍ପରାର ଜଣେ ସାମାନ୍ୟତମ ସାଧକ ହିସାବରେ ଗୁରୁପ୍ରସାଦଙ୍କର କୌଣସି ସ୍ପନ୍ଦନ ମୋ ଭିତରେ ଅନୁଭବ କରି ନାହିଁ । ଅଚେତନ ପ୍ରଭାବ କଥା ମୁଁ କହି ପାରୁନି । ଆଲୋଚନା ପ୍ରସଙ୍ଗରେ ଗୁରୁପ୍ରସାଦଙ୍କ କବିତାରୁ ଉଦାହରଣ ଦେଇଛି ଅନେକଥର, ଅବସରରେ ତାଙ୍କ କବିତାକୁ ଆବୃତ୍ତି କରିଛି କମ୍ କରିନି । ପତ୍ର ପତ୍ରିକାରେ ତାଙ୍କ ଉପରେ ନିନ୍ଦା ପ୍ରଶଂସା ମିଶ୍ରିତ, ଗୋଷ୍ଠୀମୁକ୍ତ ଓ ଗୋଷ୍ଠୀଯୁକ୍ତ ଆଲୋଚନା ପଢିବାଠୁ ଆରମ୍ଭ କରି ସେମିନାର ପେପର୍ ପାଇଁ ତାଙ୍କ କବିତାକୁ ବାରମ୍ବାର ଅଧ୍ୟୟନ କରିବାକୁ ପଡ଼ିଛି । ମୋର ସବୁଥର ମନେ ହୋଇଛି ଯେ ପ୍ରେମରେ ଯେଉଁ ଅବକ୍ଷୟ କଥା ତାଙ୍କ କବିତାରେ ସୁଲଭ, ତାହା ବିଶେଷ କରି ବିଶ୍ୱଯୁଦ୍ଧ ପରବର୍ତ୍ତୀ ପ୍ରାଣ ସ୍ପନ୍ଦନରୁ ଉଦ୍‌ଭୂତ । ବସ୍ତୁଗତ ( ମ୍ୟାଟେରିଆଲିଷ୍ଟିକ୍ ) ହତାଶା ବୋଧ ଯାହା ବିଶେଷ

କର ଅର୍ଥନୈତିକ ଦୁରବସ୍ଥା ଓ ସାଂସ୍କୃତିକ ସଙ୍କଟ ଯୋଗୁଁ ଆମ ପ୍ରଦେଶରେ ଚରି ଯାଇଛି, ତାକୁ ଯଦି ବାଦ ଦିଆଯାଏ, କେତୋଟି କଥା ବା ଭାବ ଐଶ୍ୱର୍ଯ୍ୟ ବ୍ୟତୀତ ସାଂସ୍କୃତିକ ଏବଂ ଐତିହ୍ୟଗତ ଭାବସ୍ପନ୍ଦନ ଦୃଷ୍ଟିରୁ ଗୁରୁପ୍ରସାଦ ଅନେକାଂଶରେ ବିଦେଶୀ ବିଦେଶୀ ଲାଗିବେ । ତାଙ୍କ ଦେହ ଚେତନା ପ୍ରାୟ ସର୍ବସ୍ୱ ଏକ ଯୌନ ଅବବୋଧରେ ବସ୍ତୁତଃ ସୀମାୟିତ । କାବ୍ୟ ପୁରୁଷ ବାରମ୍ବାର ସୂଚାଇଛି ଦେହର ବିକାର, ମନର ବିକାର କଥା । ମୋ ମନରେ ସ୍ୱତଃ ପ୍ରଶ୍ନ ଉଠୁଛି ଅନେକ ଥର, ତାଙ୍କର ବୈରାଗ୍ୟ ଓ ଅବକ୍ଷୟ-ଜନିତ ହାହାକାର ପ୍ରକୃତିରେ କାହିଁକି ଏତେ ବେଶୀ ? ଏଥିଲାଗି ବୋଧେ ତାଙ୍କ କବିତାରେ ନାରୀ ଭିତରେ କୌଣସି ସୌନ୍ଦର୍ଯ୍ୟ ଚେତନାକୁ ଆବିଷ୍କାର କରିବାର ପିପାସା କ୍ଷୀଣ ହୋଇ ଯାଇଛି ଏବଂ ଜୀବନର ଅନ୍ୟ ସବୁ ଦିଗ ଅବହେଳିତ ହୋଇ ପଡ଼ିଛି ।

ମାନିବାକୁ ହେବ ଯେ, ଗୁରୁପ୍ରସାଦଙ୍କ ଶୈଳୀ ଏତେ ଚମକପ୍ରଦ ଯେ ସମସାମୟିକମାନଙ୍କ ଭିତରେ ସେ ଏକ ନିଶ୍ଚିତ ବ୍ୟତିକ୍ରମ, ସଂଗୀତର ଏକ ମୃଦୁ ଲହରୀ ନିଶ୍ୱାସର ପତନ ପର୍ଯ୍ୟନ୍ତ ଲମ୍ବିଯାଏ । ବେଶି ବୋଧ, ଶବ୍ଦ ପ୍ରାଚୁର୍ଯ୍ୟ କାହିଁ ? ସେଇ ଅଳ୍ପ ଶବ୍ଦକୁ ମାପିଚୁପି ପ୍ରୟୋଗ କରିବାରେ ବିଶେଷତଃ ପ୍ରେମ-କବିତା ଲେଖିବାରେ ସେ ଏକ ଅଲବତ ଦକ୍ଷ ଶିଳ୍ପୀ । ଏବର ଜଣେ ଅଧେ କବିଙ୍କ ପରି ଯାଚ୍ଛାତା ଶବ୍ଦ ସଂଯୋଜନାରେ ଦେହ ଉଚ୍ଛାଟନକୁ ପୁନଃ ପୁନଃ ପ୍ରକାଶ କରି ଦୀର୍ଘ ପ୍ରେମ କବିତା ନାଁରେ ପାଠକଙ୍କୁ କିଛି ଚମକ ଦେଖାଇବା ବା ଅଯଥା କ୍ଲାନ୍ତ କରି ଦେବା ଭଳି କବି ସେ ନ ଥିଲେ । ତାଙ୍କ କବିତାରେ ଯୌନ ବିକୃତି ନାହିଁ, ବିକାର ସଂପର୍କରେ କୁହାଯାଇଛି । ମୁଁ ବି ପୂର୍ବରୁ

ଏ କଥା କହୁଛି । କେବେ କେବେ ବନ୍ଧୁ ମହଲରେ ଆଲୋଚନା କରିଛି ଯେ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ କରି ନିଜ ସାହିତ୍ୟରେ ସମୀକରଣ କରିବାର ଅନ୍ୟତମ ବଳିଷ୍ଠ ପ୍ରତିଭା 'କାଳପୁରୁଷ'ର କବି ଗୁରୁପ୍ରସାଦ । ଏଠି ମୁଁ ଅନେକ ସମାଲୋଚକ ବା କବିଙ୍କ ପରି 'କାଳପୁରୁଷ'କୁ 'ଓ୍ୱେଷ୍ଟଲ୍ୟାଣ୍ଡ'ର ଏକ ନକଲ ସଂସ୍କରଣ ବୋଲି କହୁନାହିଁ । କିନ୍ତୁ ଏତିକି କହିବି ଯେ ଆହରଣ ଏବଂ ସମୀକରଣ କଳାଶିଳ୍ପ ଦୃଷ୍ଟିରୁ ଏହା ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ ଏକ ସଫଳ ଉଦାହରଣରୂପେ ସ୍ୱୀକୃତ ହେବ ।

ଉତ୍ତର ପର୍ଯ୍ୟାୟରେ ନୂଆ ସ୍ୱାଦ ଓ ଶିଳ୍ପ ପ୍ରକରଣ ଦୃଷ୍ଟିରୁ ଏକ ଅବି-ସଂବାଦିତ ପ୍ରତିଭା ଗୁରୁପ୍ରସାଦ । ତାଙ୍କ ସମସାମୟିକ ଅନ୍ୟତମ ସଚେତନ କବି ବୈଷ୍ଣବଚରଣ ସାହୁ ; ଭିନ୍ନ ଇଲାକା ଓ ଆଲୋକର କବି ସେ । ତେବେ ସବୁଜ ପୂର୍ବରୁ ପ୍ରତିଷ୍ଠା ଲାଭ କରିଥିବା ରମାକାନ୍ତ, ସୀତାକାନ୍ତ, ଦୀପକ ପ୍ରଭୃତି ବା ସବୁଜ ପରେ ପ୍ରତିଷ୍ଠିତ ସୌଭାଗ୍ୟ ପ୍ରମୁଖଙ୍କ କବିତାକୁ ବିଚାରକୁ ନେଲେ ସୀତାକାନ୍ତ, ସୌଭାଗ୍ୟ ଓ ଅନ୍ୟ ବହୁ କବିଙ୍କ ପ୍ରାଥମିକ କବିତା ଗୁଡ଼ିକରେ ଗୁରୁପ୍ରସାଦଙ୍କ ପ୍ରଭାବ ପରିଲକ୍ଷିତ ହେବ ଉଭୟ ଭାବଚେତନା ଓ ଶିଳ୍ପ ପ୍ରକରଣ ଦୃଷ୍ଟିରୁ । ନାମୋଲ୍ଲେଖ କରାଯାଇଥିବା ଅନୁଜ ମାନେ ତାଙ୍କୁ ସଂପ୍ରତି ଅତିକ୍ରମ କରିଗଲେଣି ବୋଲି କହିବାରେ ମୋର ଦ୍ୱିଧା ନାହିଁ । ଆହୁରି ମଧ୍ୟ ମୁଁ ଲକ୍ଷ୍ୟ କରିଛି ତାଙ୍କ କବିତା ଯେଉଁ ମାତ୍ରାରେ ପାଠକଙ୍କୁ ଆବେଗରେ ଜାବୁଡ଼ି ଧରି ରଖିପାରେ, ସେଇ ମାତ୍ରାରେ ମୁଁତକୁ ସଂକ୍ରମିତ ହୋଇପାରେ ନାହିଁ । ଅନ୍ୟ କୌତୁକପ୍ରଦ କଥାଟି ହେଉଛି, ଆବେଗକୁ ମୁଖ୍ୟ ଉପଜୀବ୍ୟ କରି ପ୍ରେମ କବିତା ଲେଖୁଥିବା ତରୁଣମାନେ ଏବେ ବି ପ୍ରଥମେ ତାଙ୍କ କବିତା ପ୍ରେମରେ ପଡ଼ନ୍ତି—ବର୍ଷର ଅଧ୍ୟୟନ ଓ ବ୍ୟକ୍ତିଗତ ଅଭିଜ୍ଞତାରୁ କହୁଛି । ଏ କଥା ସତ ଯେ ସେ ଇଲାକାରେ କିଛି ଦିନ ବୁଲାଚଲା କରି ଏମାନେ ଅଲଗା ବାଟ ବାଛନ୍ତି ।

ଆଧୁନିକ କାଳରେ ସବୁଠୁ କମ୍ କବିତା ଲେଖି ସାହିତ୍ୟର ପରଂପରାରେ ବାସ କରିଥିବା କବିଙ୍କ ତାଲିକାରେ ତାଙ୍କ ନାମ ପ୍ରଥମରେ ରହିବ । କିନ୍ତୁ ସେ ସାତମତ କବିତା ଲେଖାରେ ମନୋନିବେଶ କରିଥିଲେ

ତାଙ୍କ ପରବର୍ତ୍ତୀ ସୃଷ୍ଟିଗୁଡ଼ିକରେ ରୂପ କିପରି ହୋଇଥାଂତା ତା' କହିବା କଷ୍ଟକର । ତାଙ୍କର ସେଇ କାବ୍ୟଗ୍ରଂଥ 'ସମୁଦ୍ରସ୍ନାନ' ମୋ ର୍ୟାକରେ ଏବେ ସଜ୍ଜିତ ହୋଇ ରହିଛି ପ୍ରଥମ କିଶୋରୀର ପ୍ରେମ ପତ୍ର ପରି । ତାଙ୍କର ବିକାଶ ଓ ଉତ୍ତରଣ କଥା ଶୁଣିବା ହୁଏ ନାହିଁ । ଏବେ ଓଡ଼ିଆ କବିତାର ସମୁଦ୍ର କୂଳରେ ସ୍ନାନ କରିବାକୁ ଅନେକଙ୍କ ଭିଡ଼, ଅନେକଙ୍କର ଲହଡ଼ି ଖାଂଗିବା । ସେଇଆଡ଼େ ମୁଁ ମୋ କାନ ପାରିଛି ।



— ଶତ୍ରୁଘ୍ନ ପାଣ୍ଡବ

ଶୁଣାଯାଏ, ବସ୍‌ୱେଲ, ଡଃ ଜନ୍‌ସନଙ୍କ ସଂପର୍କରେ ଜାଣିବାପାଇଁ ବହୁ ବାଧାର ସମ୍ମୁଖୀନ ହୋଇଥିଲେ । ସବୁଠୁ ମଜାର କଥା—ଡଃ ଜନ୍‌ସନ୍ ନିଜେ ହିଁ ଥିଲେ ଏହାର ମୁଖ୍ୟ ହେତୁ । ତଥାପି ବସ୍‌ୱେଲ, ଜନ୍‌ସନ୍‌ଙ୍କ ସାକ୍ଷାତ କରିବାର ମୋହ ଏଡ଼ାଇ ପାରି ନ ଥିଲେ । ଏହା ଅଷ୍ଟାଦଶ ଶତାବ୍ଦୀର ଘଟଣାବିଶେଷ ହୋଇପାରେ; କିଂତୁ ଆବେଗପ୍ରବଣ କବି ଲେଖକଙ୍କ ସାନ୍ନିଧ୍ୟ ସବୁବେଳେ ଆକର୍ଷଣୀୟ ହୋଇ ରହି ଆସିଛି । ସେହିପରି ଏକ ଆବେଗର ମୋହରେ ମୁଁ ପୁରୀ କଲେଜକୁ ପଢ଼ିବାକୁ ଗଲି । ଏହା ୧୯୫୮ ମସିହାର କଥା ।

ଗୁରୁବାବୁଙ୍କ ପରି ପ୍ରତିଭାଧର କବିଙ୍କୁ ନିକଟରେ ପାଇବା, ତାଙ୍କର ସ୍ୱର ଓ ତାଙ୍କର ଅନୁଭବ ସହିତ ଏକାତ୍ମ ହେବାର ମୋହ, ଯେ କୌଣସି ତରୁଣ କବି ନିକଟରେ ରହିବା ସ୍ୱାଭାବିକ । ସେତେବେଳେ ସୁଦ୍ଧା ସଚ୍ଚି ରାଉତରାୟଙ୍କ 'ପଲ୍ଲୀଶ୍ରୀ' (୧୯୪୦), 'ବାଜିରାଉତ' (୧୯୩୯-୪୨), 'ପାଣ୍ଡୁଲିପି' (୧୯୪୭) ଓ 'ଭାନୁମତୀର ଦେଶ' (୧୯୪୯) ଆଦି କବିତା ପୁସ୍ତକ ମାଧ୍ୟମରେ ମୋର ଅନ୍ତତଃ ଆଧୁନିକ କବିତା ସହିତ କିଛିଟା ପରିଚୟ ହୋଇସାରିଥିଲା । ଗୁରୁବାବୁଙ୍କର ୧୯୫୫ରେ ପ୍ରକାଶିତ 'ନୂତନ କବିତା' ମଧ୍ୟ ପଢ଼ି ସାରିଥିଲି

ଏବଂ ବିଭିନ୍ନ ସମୟରେ 'ଝଙ୍କାର'ରେ ପ୍ରକାଶିତ ତାଙ୍କର କବିତାକୁ ମଧ୍ୟ ବହୁବାର ପଢ଼ିଥିବାର ମୋର ସ୍ପଷ୍ଟ ମନେ ଅଛି । ବିଷୁବ ସଂଖ୍ୟା 'ଝଙ୍କାର'ରେ ଗୁରୁବାବୁଙ୍କ କବିତା ସହିତ ପ୍ରକାଶିତ ଗ୍ରୁପ୍ ଫଟୋ ମାଧ୍ୟମରେ ତାଙ୍କ ସମ୍ପର୍କରେ ମୋର କେମିତି ଏକ ରହସ୍ୟପୂର୍ଣ୍ଣ ଆବେଗମୟ ଧାରଣା ସୃଷ୍ଟି ହୋଇଥିଲା ।

୧୯୫୮ରୁ ୬୦, ଦୁଇବର୍ଷ କାଳ ମୁଁ ତାଙ୍କୁ ଦୂରରୁ ହିଁ ଦେଖିଛି । ସେତେବେଳକୁ ପ୍ରକାଶିତ ତାଙ୍କର 'ଦୃଷ୍ଟିର ଦିଗନ୍ତ', 'ହରେକୃଷ୍ଣ ଦାସ (ଦୁଇ)' ଓ ଅନ୍ୟ କେତେକ କବିତା ପଢ଼ିଛି । ୧୯୬୦ରେ ('ପ୍ରଜ୍ଞା'-୨) 'କାଳପୁରୁଷ' ପ୍ରକାଶିତ ହେଲା । ସେ କବିତା ପଢ଼ିଲାପରେ, ଆଉ କବିତା ଲେଖିବା ଉଚିତ ନୁହେଁ ବୋଲି ମୋର ଧାରଣା ହେଲା ଏବଂ କେତେଦିନ ପର୍ଯ୍ୟନ୍ତ ମୋର କବିତା ଲେଖିବା ମଧ୍ୟ ବନ୍ଦ ହୋଇଯାଇଥିଲା ।

ଏ ଭୂମିକାର ତାତ୍ପର୍ଯ୍ୟ ହେଲା—ଗୁରୁବାବୁଙ୍କ କବିତା କେବଳ ମୋତେ ନୁହେଁ, ସେ ସମୟର ଅନେକଙ୍କୁ ଆବୋରି ରଖିଥିଲା । ମାତ୍ର ୨୯ଟି କବିତା ଲେଖି ଏତେ ପ୍ରଭାବଶାଳୀ କବି ଭାବରେ ଓଡ଼ିଆରେ ସେ ହିଁ ପ୍ରଥମ ।

ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଅର୍ଥାତ୍ ପ୍ରାୟ ୯୦ ବର୍ଷ ତଳେ ରାଧାନାଥ ଓଡ଼ିଆ କବିତାକୁ ସଂସ୍କୃତ ପ୍ରଭାବରୁ ମୁକ୍ତ କରି ନୂତନ ଦୃଷ୍ଟିଭଙ୍ଗୀର ପରିଚୟ ଦେଲେ । ଫଳରେ ଦୀର୍ଘଦିନ ଧରି ରାଧାନାଥଙ୍କ କାବ୍ୟ-ପ୍ରଣାଳୀ ଓଡ଼ିଆ କବିତାକୁ ପ୍ରଭାବିତ କରି ରଖିଥିଲା । ଓଡ଼ିଶାର ଜନ ଜୀବନରେ ବହୁ ପରିବର୍ତ୍ତନ ସହିତ ବିଶ୍ୱସାହିତ୍ୟର ଦ୍ରୁତ ପରିବର୍ତ୍ତନ ସଂପର୍କରେ ଓଡ଼ିଆ କବିମାନେ ସଚେତନ ଥିଲେ ହେଁ, ରାଧାନାଥଙ୍କ ପ୍ରଭାବକୁ ଏଡ଼ାଇ ଏହାର ପ୍ରକୃତିକୁ ବୁଝିପାରିଲେ ନାହିଁ । ରାଧାନାଥ-ପରଂପରା ଯେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମଧ୍ୟ ଅଚଳ, ଏହା ଓଡ଼ିଆ କବିତାରେ ଲକ୍ଷ୍ୟ କରିଯାଇପାରିଲା ନାହିଁ ।

ପରିବର୍ତ୍ତିତ ପରିସ୍ଥିତିରେ ନିର୍ଦ୍ଦିଷ୍ଟ ଓ ମୌଳିକ କାବ୍ୟ ବକ୍ତବ୍ୟ ଓ କାବ୍ୟ ଅନୁଭବ ନିମିତ୍ତ ନୂତନ କାବ୍ୟଭାଷା ଓ ନୂତନ କାବ୍ୟ ଆବେଗର

ଆବଶ୍ୟକତା ପ୍ରଥମେ ଗୁରୁବାବୁଂକ କବିତାରେ ଉପଲବ୍ଧ ହେଲା । ତାଂକର କବିତାସମୂହ, ଓଡ଼ିଆରେ ପ୍ରଥମ ଥର ପାଇଁ ରାଧାନାଥ-ପରଂପରାରୁ ମୁକ୍ତି ଲାଭ କରି 'ନୂତନ ଚେତନା'କୁ ସ୍ପଷ୍ଟ ଭାବରେ ପ୍ରକାଶ କଲା ଏବଂ ତରୁଣତର କବିମାନଙ୍କୁ ନୂତନ ଭାବରେ କବିତା ଲେଖିବାକୁ ପ୍ରେରଣା ଦେଲା । ('ସମୁଦ୍ର ସ୍ନାନ' ଆଲୋଚନା, ଯତୀନ୍ଦ୍ର ମୋହନ ମହାନ୍ତି, ପ୍ରଜ୍ଞା-୩,୧୯୭୧,ପୃଷ୍ଠା-୩)

ଗୁରୁବାବୁଂକ କାବ୍ୟଭାଷା ସମୃଦ୍ଧ, ବୈଚିତ୍ର୍ୟମୟ, ଶକ୍ତିଶାଳୀ ଓ ସ୍ୱଚ୍ଛନ୍ଦ । ତାଂକ କବିତାରେ ଶବ୍ଦସମୂହର ଅଦ୍ଭୁତ ଓ ଆବେଗପୂର୍ଣ୍ଣ ସମିଶ୍ରଣ ପାଠକ ମନରେ ନୂତନ ଅନୁଭବର ଉଦ୍ରେକ କରିଥାଏ । ଉଦାହରଣ ସ୍ୱରୂପ ତାଂକର ଯେ କୌଣସି କବିତାର ଯେ କୌଣସି ୨/୩ ଧାଡ଼ିକୁ ନିଆଯାଇ ପାରେ । ନିମ୍ନରେ କେତୋଟି ମାତ୍ର ଉଦାହରଣ ଉଲ୍ଲେଖ କରାଯାଇ ପାରେ ।

(୧) "ତୁମକୁ ମୁଁ ଖୋଜିଥିଲି ଦୟା କ୍ଷମା ଆଶା ଓ ସ୍ୱପ୍ନରେ ।
ସ୍ୱପ୍ନ କାହିଁ ? କ୍ଷମା କାହିଁ ? ସମୟର ବିବର୍ଣ୍ଣ ବିସ୍ମୃତି "
(ସନେଟ୍-୬)

(୨) "ଆକାଶର ଶୂନ୍ୟତାରେ ପୃଥିବୀର ଦୁରନ୍ତ ଏ ଗତି
ତୁମର ବା ଶେଷ କେବେ ଶେଷ ମୋର ସମୟ ଓ ସ୍ଥିତି ?"
(ସନେଟ୍-୭)

(୩) "ଅକସ୍ମାତ୍ ଏ କି ଭୟ—
କେଉଁ ଘୋର ଦୁର୍ଦ୍ଦିନ ବା କେଉଁ ଘୋର ମହାପାତକର !"
(ହରେକୃଷ୍ଣ ଦାସ-୨)

(୪) "ମୁଁ କହିଲି ଭଲ ପାଅ, ଭଲ ପାଅ ସତେ ଭଲ ପାଅ
ମୁଁ ଶୁଣିଲି କାନରେ ମୋ ହାଡ଼ ଆଉ ମାଂସର ସ୍ପନ୍ଦନ
ମୁଁ ଦେଖିଲି ବାମ ଅଂଗ ପଂଗୁ ମୋର ବର୍ଣ୍ଣ ମୋର ଈଷତ୍ ପିଂଗଳ ।"
(କାଳପୁରୁଷ-୫୭-୯୦)

ଉପରୋକ୍ତ ୪ଟି ଉଦ୍ଧୃତିରେ 'ପ୍ରଶ୍ନ', 'ବିସ୍ମୟ' ଓ 'ପୁନରାବୃତ୍ତି' ('ସ୍ୱପ୍ନ', 'କ୍ଷମା', ଶେଷ', ଓ 'କେଉଁ ଘୋର') ନୂତନ କାବ୍ୟଆବେଗ ସୃଷ୍ଟି-କର କାବ୍ୟଗୁଣରେ ପରିଣତ ହୋଇଅଛି ।

ରୋମାଣ୍ଟିକ୍ ପରିବର୍ତ୍ତେ ଶ୍ଳେଷାତ୍ମକ ଦୃଷ୍ଟିଭଙ୍ଗୀ ଗୁରୁବାବୁଙ୍କ କବିତାର ଅନ୍ୟ ଏକ ବୈଶିଷ୍ଟ୍ୟ । 'ଗୋବର ଗଣେଶ' କବିତାରେ ପ୍ରକାଶିତ ଶ୍ଳେଷ ଓଡ଼ିଆ କବିତାରେ ପୂର୍ବରୁ ପରିଲକ୍ଷିତ ହୋଇ ନ ଥିଲା । ଏହି କବିତାର ନାୟକ ଖାରଖ ଓ ଗୌରବରହିତ ଗୋବର ଗଣେଶ ଏବଂ ପ୍ରକୃତ ଅର୍ଥରେ ସେ ନାୟକ ନୁହେଁ—ଏହାହିଁ ଏହି କବିତାରେ ସବୁଠୁ ବଳ ଶ୍ଳେଷ । ('ସମୁଦ୍ର ସ୍ନାନ' ଆଲୋଚନା, ସଚ୍ଚିଦାନନ୍ଦ ମୋହନ ମହାନ୍ତି 'ପ୍ରଜ୍ଞା'-୩, ୧୯୭୧, ପୃଷ୍ଠା-୯)

ତାଙ୍କ କବିତାରେ ପ୍ରକାଶିତ ଆଧୁନିକ ଜୀବନର (୧) ବିଫଳତା, (୨) ଅସଫଳତା, (୩) ସମୟ ଚେତନାର ଶବ୍ଦ ଓ (୪) ମୃତ୍ୟୁର ଅନୁଭବ ଓଡ଼ିଆ କବିତାରେ ସମ୍ପୂର୍ଣ୍ଣ ନୂତନ ଏବଂ ସମସାମୟିକ ସଭ୍ୟତାର ଜଟିଳତାଜନିତ ପ୍ରତିକ୍ରିୟା ସ୍ୱରୂପ ଧ୍ୱଂସ, ଅବକ୍ଷୟ, ଜରା, ମୃତ୍ୟୁ ଓ ବ୍ୟାଧିର ଅନୁଭୂତି ମାଧ୍ୟମରେ ସମୟର 'ଦୁରନ୍ତ ଗତି' ('ଶଠ') ପ୍ରତି ସଚେତନ ଦୃଷ୍ଟିଭଙ୍ଗୀ ତାଙ୍କ ପୂର୍ବରୁ ପ୍ରକାଶିତ ହୋଇ ନ ଥିଲା । ଏଠାରେ ନିମ୍ନୋକ୍ତ ଉଦାହରଣ ଗୁଡ଼ିକୁ ଲକ୍ଷ୍ୟ କରାଯାଇପାରେ ।

(୧) ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଦୁଅ ପାଲଟି'କିମ୍ବା'ସିନେମାର ହାଣ୍ଡବିଲ ମୁଁ ଦେଖିଛି ତୁମର ଦେହରେ ।' (ଅଳକା ସାନ୍ୟାଲ) । (୨) 'ମଣିଷର କେତେ ସ୍ୱପ୍ନ ଆଶା ଓ ନିରାଶା କେତେ/ଯୋଜନା ଓ କମିଟି ଭିତରେ ।' (ହରେକୃଷ୍ଣ ଦାସ-୨) । (୩) 'ସ୍ତିମିତ ତାରାର ଲୁହ ଆକାଶରୁ ପୁଣି ଆକାଶକୁ/ଶୀତର କୁହୁଡ଼ିଯାଏ ପାରହୋଇ ଆଜ ଯେବେ ଦିଗନ୍ତରୁ କେତେ ଦିଗନ୍ତକୁ ।, (ନିହତ ଗୋଧୂଳି) କିମ୍ବା 'ନିସ୍ତବଧ, ଦିପହରେ ପଥ ଝଡ଼ା ଶୁଭେ ନାହିଁ ଖବର ନିଶ୍ବାସ' (ଆଖିର କପୋତ ମୋର) । (୪) 'ଜରା ମୃତ୍ୟୁ

ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।' (ଆଖିର କପୋତ ମୋର) କିମ୍ବା 'ମୁଁ ଆଜ ପଠାଏ ମୋର ଏ ବରଷ ଭସ୍ମ ପୁଣି ସ୍ତୂପ ସ୍ତୂପ/ ନିରର୍ଥକ ବାଲି/ମୁଁ ପଠାଏ ତୁମ ପାଇଁ ମୋର ରୋଗ ଯନ୍ତ୍ରଣା ଓ ମୋ ଦେହର/ଖାଲ ଆଉ ଡାକ୍ତର ଖବର । ମୁଁ ପଠାଏ ତୁମଆଡେ ମୋର ଶତ ପ୍ରେତାତ୍ମାର ନକ୍ସା/ଯେତେ ଆଶା ଆଉ ମୋର ପିତୃପୁରୁଷର ଜରା ମୃତ୍ୟୁ ବ୍ୟାଧିର ଖବର ।' (ଠେ) ।

ଏପରିକି 'ପିକ୍‌ନିକ୍' ଓ 'ଛୁଟିର ଖବର' କବିତା ଦୁଇଟିର ଗ୍ରାମ୍ୟ ପ୍ରକୃତି ପରିବେଶରେ ମଧ୍ୟ କାବ୍ୟ ନାୟକର ମୁକ୍ତି ନାହିଁ । 'ଜନ୍ମ ଧୀରେ ଧୀରେ ଶେଷକୁ ନିସ୍ତେଜ ହୋଇଯାଏ 'ଏବଂ ଆମେ ସବୁ ରହିଁ ଦେଖୁ ବାଉବାଟି ଘରପାଖେ ନଗ୍ନଟିଏ ଗଡ଼ର ପରଖା' (ପିକ୍‌ନିକ୍) । ପୁନଶ୍ଚ 'ନଗ୍ନଟିଆ ଜୋର ପାଣି, ନଗ୍ନଟିଆ ନେଳ ଶୀତଳରେ, ଦ୍ୱିପ୍ରହର ହଳଦିଆ' ପାଲଟିଯାଏ ଏବଂ 'ତୁମ ଗାଆଁ ଓ ଆମ ଗାଆଁ, ଶ୍ମଶାନ ଖବରେ ବିଷର୍ଣ୍ଣ' ହୋଇଯାଏ । ( ଛୁଟିର ଖର )।

ଉପରୋକ୍ତ କାବ୍ୟଗୁଣ ସହିତ ସଂସାରର ନଶ୍ୱରତା, ମୋହ, ଅସାରତା, କାବ୍ୟ ନାୟକର ନିର୍ଲିପ୍ତ ମନୋଭାବ ଓ ଅସହାୟତା ମଧ୍ୟ ଗୁରୁବାବୁଙ୍କ କବିତା ସମୂହର ଅନ୍ୟତମ ବୈଶିଷ୍ଟ୍ୟ ଏବଂ ଏ ସବୁର ଶୀର୍ଷତମ ପରିପ୍ରକାଶ ହେଉଛି 'କାଳପୁରୁଷ' ।

ବର୍ଷା ବା ଜୀବନର ସୂଚନାରେ 'କାଳପୁରୁଷ'ର ଆରମ୍ଭ ହୋଇଥିଲେ ହେଁ ଏହା 'ନଶ୍ୱର' ଓ 'ନିର୍ମମ' ଏବଂ ଏହି ଅନୁଭୂତି ସମଗ୍ର କବିତାରେ ସଂପ୍ରସାରିତ । କବିତାର ଶେଷ ପର୍ଯ୍ୟାୟ ନର୍କର ବର୍ଣ୍ଣନା ପ୍ରସଙ୍ଗରେ ସାମ୍ପ୍ରତିକ ମଣିଷର ଅସହାୟତା ସୂଚିତ । ଏହି ଉପଲବ୍ଧି,

(୧) "ଏକ ଦେହେ ଜନ୍ମ ନେଲି ପୁରୁଷ ମୁଁ ସେହି ଦେହେ
ନାରୀର ଶୃଙ୍ଗାର"

× ×　　　× ×　　　(୩୩୩)

"× × ରାଜାଙ୍କର ଇଳା ନାମେ
ଏକମାତ୍ର ପୁତ୍ର ଓ ଦୁହିତା···"(୩୩୪—୩୩୬)

ଏବଂ (୨) "କଳୁ ମୋର ସମ୍ମୁଖରେ ଏ ବଢତ ଏକପାଦ ବଣିଷ୍ଟ
ବୃଷଭ
ପୁଣି ଏହି ଭଦ୍ରଲୋକ ଧଳାଧୋତି ପଞ୍ଜାବୀ ଓ
ଧଳାଟୋପି ଧଳାକାର ବର୍ଣ୍ଣ ପୁଣି ଈଷତ୍ ପିଙ୍ଗଳ
ଯଷ୍ଟି ଆଘାତ ଆଜ ବୃଷଭର ଆର୍ତ୍ତନାଦ···"
(୩୩୯-୩୫୨) ଇତ୍ୟାଦି ବର୍ଣ୍ଣନାରେ

ସୁସ୍ପଷ୍ଟ ଓ ଗଭୀର

'ଭାଗବତ' (୯ମ ସ୍କନ୍ଧ-୧ମ ଅଧ୍ୟାୟ) ବର୍ଣ୍ଣିତ 'ଇଳା' କନ୍ୟା ବଶିଷ୍ଠଙ୍କ ଦ୍ୱାରା ପୁଂ 'ସୁଦ୍ୟୁମ୍ନ'ରେ ପରିଣତ ଏବଂ ଯୁବକ ଅବସ୍ଥାରେ ମୃଗୟା ଉଦ୍ଦେଶ୍ୟରେ 'ସୁକୁମାର' ବନରେ ପ୍ରବେଶ କରି ମହାଦେବଙ୍କ ପୂର୍ବ ଅଭିଶାପରୁ ସ୍ତ୍ରୀତ୍ୱ ପ୍ରାପ୍ତି । ପୁନଶ୍ଚ ସେହି ସଦାଶିବଙ୍କ ଦୟାରୁ ଆଜୀବନ ଏକମାସ ପୁରୁଷ ଓ ଏକମାସ ସ୍ତ୍ରୀ ହେବା ପ୍ରସଙ୍ଗ ପ୍ରଥମ ଉଦାହରଣରେ ସୂଚିତ ।

ଦ୍ୱିତୀୟ ଉଦାହରଣରେ ମଧ୍ୟ 'ଭାଗବତ' (୧ମ ସ୍କନ୍ଧ-୧୭ଶ ଅଧ୍ୟାୟ) ବର୍ଣ୍ଣିତ ଉପାଖ୍ୟାନର ସୂଚନା ଦିଆଯାଇଅଛି । 'ବୃଷଭ' ହେଉଛି ଧର୍ମ । ଏହାର ଚାରିପାଦ—ତପ, ଶୌଚ, ଦୟା ଓ ସତ୍ୟ । ତପ, ଶୌଚ, ଓ ଦୟାରୂପକ ତିନିପାଦ ଯଥାକ୍ରମେ ସତ୍ୟ, ତ୍ରେତୟା ଓ ଦ୍ୱାପର ଯୁଗରେ ନଷ୍ଟ ହୋଇ, କଳିଯୁଗରେ କେବଳ ଗୋଟିଏ

ପାଦ 'ସତ୍ୟ' ହିଁ ରହିଛି । ସେହି ଏକମାତ୍ର ପାଦଟିକୁ କଳି ଯଷ୍ଟିରେ ଅଘାତ କରୁଛି ।

ସ୍ୱଦ୍ୟୁମ୍ନର ଏକମାସ ଅନ୍ତରରେ ଯଥାକ୍ରମେ ପୁରୁଷତ୍ୱ ଓ ସ୍ତ୍ରୀତ୍ୱ ପ୍ରାପ୍ତି ଏବଂ ଏକପାଦ ବଶିଷ୍ଟ ବୃଷଭକୁ ଯଷ୍ଟି ପ୍ରହାର—ଉଭୟ ବର୍ଣ୍ଣନା ପ୍ରସଂଗରେ କାବ୍ୟନାୟକର ଅସହାୟତା ଗମ୍ଭୀର ଓ ସୁସ୍ପଷ୍ଟ । 'ଭାଗବତ' ବର୍ଣ୍ଣିତ ଉପାଖ୍ୟାନ ସହିତ ସାଂପ୍ରତିକ ମଣିଷର ଅସହାୟତା ସମପର୍ଯ୍ୟାୟରେ ହୋଇ-ଥିବାରୁ କାବ୍ୟୋପଲବ୍ଧି ତାତ୍ପର୍ଯ୍ୟପୂର୍ଣ୍ଣ ହେବା ସଂଗେ ସଂଗେ ଐତିହ୍ୟ ସହିତ ସଂଯୋଗ ସ୍ଥାପିତ ହୋଇ ପାରିଛି । ସେହିପରି ଦଗ୍ଧିଚି, ଅକ୍ରୁର, ଉଦ୍ଧବ, ଅଜଗର ପ୍ରଭୃତି ପୌରାଣିକ କାବ୍ୟବସ୍ତୁ ଉପସ୍ଥାପନ ବା ମିଥ୍ ପ୍ରୟୋଗରେ କାବ୍ୟବକ୍ତବ୍ୟ ବଳିଷ୍ଠ ଓ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଜୀବନର ନୂତନ ମୂଲ୍ୟ ନିରୂପଣରେ ସହାୟତା କରିଛି । ଫଳରେ ରାଧାନାଥ-ପରଂପରା ପ୍ରଭାବିତ ଓଡ଼ିଆ କବିତାର ଧାରା ପରିବର୍ତ୍ତିତ ହୋଇ ପରବର୍ତ୍ତୀ କାଳରେ ବୈଚିତ୍ର୍ୟମୟ ଓ ସମୃଦ୍ଧିଶାଳୀ ହୋଇପାରିଛି ।

ଏହି ପରିପ୍ରେକ୍ଷୀରେ ଅନ୍ତତଃ ଏତିକି ନିଶ୍ଚିତ ଭାବରେ କୁହାଯାଇ ପାରେ ଯେ, କାବ୍ୟବକ୍ତବ୍ୟ ନିମିତ୍ତ କାବ୍ୟୋପଯୋଗୀ ସଂପ୍ରସାରଣଶୀଳ ସଂଯତ ଭାଷା, ସମଯସଚେତନ ନୂତନ ଅନୁଭବ ଏବଂ ପରଂପରା ସହିତ ସଂପର୍କ ସ୍ଥାପନରେ ନୂତନ ଦୃଷ୍ଟିଭଂଗୀ ଇତ୍ୟାଦି କ୍ଷେତ୍ରରେ, ଗୁରୁବାବୁଙ୍କ କବିତା ନିକଟରେ ଆମେମାନେ ଋଣୀ ।

— ବଂଶୀଧର ଷଡ଼ଙ୍ଗୀ



ମୁଁ କଲେଜ ଛାତ୍ର ଥିଲାବେଳେ ଗୁରୁପ୍ରସାଦଙ୍କ କବିତା ପ୍ରଥମେ ପଢ଼ିବାକୁ ପାଇଥିଲି । 'ନୂତନ କବିତା' ଓ 'ସମୁଦ୍ରସ୍ନାନ' ବହି ରୂପରେ ମିଳିବା ପୂର୍ବରୁ, ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କବିତାଗୁଡ଼ିକୁ ପତ୍ରିକାରୁ

ଅଲଗା କରି ଏକ 'ବ୍ୟକ୍ତିଗତ ସଂକଳନ' କରିଥିଲି । ସେଇ ସଂକଳନରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ବେଣୁଧର ରାଉତ, ବିନୋଦ ଚନ୍ଦ୍ର ନାୟକ ଓ ଅନ୍ୟମାନଙ୍କର କବିତା ସହିତ ଗୁରୁପ୍ରସାଦଙ୍କ କେତେଗୋଟି କବିତା ମଧ୍ୟ ଥିଲା ।

'କାଳପୁରୁଷ'ର ଏକ ହାତଲେଖା 'କପି' ହିଁ ମୁଁ ପ୍ରଥମେ ପଢ଼ିବାକୁ ପାଇଥିଲି । ମୋର ଜଣେ ସହାଧ୍ୟାୟୀ ବନ୍ଧୁ କବିତାଟି ପଢ଼ି ଏତେ ବେଶୀ ମୁଗ୍ଧ ହୋଇ ଯାଇଥିଲେ ଯେ, ସେ ସଂପୂର୍ଣ୍ଣ କବିତାଟିକୁ 'ପ୍ରଜ୍ଞା' ପୃଷ୍ଠାରୁ ଉତାରି ନେଇଥିଲେ । କେବଳ ସେତିକି ନୁହେଁ, ବିଶେଷ କୌଣସି କାର୍ଯ୍ୟ ନ ଥିଲାବେଳେ ଶ୍ରେଣୀ କକ୍ଷରେ, କଲେଜ ଭିତର ଓ ବାହାର ପଡ଼ିଆରେ ଏକ ଅତି ଦ୍ରୁତ ଢଙ୍ଗରେ 'କାଳପୁରୁଷ'ର ବିଭିନ୍ନ ଅଂଶ ଆବୃତ୍ତି କରିଥିଲେ । ମେ ପ୍ରାୟ ନୀରବ ଥାଆନ୍ତି । ମଝିରେ ମଝିରେ କୌଣସି ଉପକ୍ରମଣିକା, ଭୂମିକା ବା ଗୌରଚନ୍ଦ୍ରିକା ପୂର୍ବରୁ ହଠାତ୍ କହି ଉଠନ୍ତି :

> ସେଦିନ ଆସିଲା ବର୍ଷା...
> ସ୍ଲାର୍ଡ ଦାସ ଇଂଜିନିଅର...
> ଗୋଡ଼ ଯଦି ଖସିଗଲା ପଣିବା ଟ୍ରେପାରେ
> ତାର ବା ଦୋଷ କଣ ? —ଇତ୍ୟାଦି ।

ଏହି ସହାଧ୍ୟାୟୀ ବନ୍ଧୁ—ସଂସର୍ଗରୁ ହିଁ ଗୁରୁପ୍ରସାଦଂକ କବିତା ସହିତ ମୁଁ ସଂପୃକ୍ତ ।

ତାଙ୍କୁ ପ୍ରଥମ ଥର ପଢ଼ିଲା ବେଳେ ତାଙ୍କ କବିତାର ଗୀତିମୟତା ମୋତେ ମୁଗ୍ଧ କରିଥିଲା । ଦ୍ୱିତୀୟ ଥର ଦେଖିଲା ବେଳକୁ ଅନେକ ଚହ୍ଲା ଚହ୍ଲା ମୁହଁ ଓ ଦୃଶ୍ୟ ମୋତେ ସ୍ମୃତି ଓ କଳ୍ପନାର ଏକ ଜଗତରେ ବିଭୋର କରି ରଖିଥିଲେ । ତୃତୀୟ ଥର ଜାଣିଲା ବେଳକୁ ଗୁରୁପ୍ରସାଦଂକ କେବଳ ଗୋଟିଏ କବିତା ହିଁ ପଢ଼ି, ଦେଖି, ଶୁଣି ଚାଲିଛି ମୁଁ । ଏବେ ବୁଝୁଛି ଯେ, ସେ କେବଳ ଗୋଟିଏ କବିତା ହିଁ ଲେଖି ଚାଲିଛନ୍ତି ଏ ପର୍ଯ୍ୟନ୍ତ ।

ତାଙ୍କର ଏ Continuity ହିଁ ତାଙ୍କୁ ବାରଂବାର ବଳ ଯୋଗାଇଛି । ତେଣୁ ମୋର ମନେ ହୁଏ ତାଙ୍କ କବିତାକୁ ବିଭିନ୍ନ ନାମ ଦେଇ ଭାଗ ଭାଗ କରି, ଖଂଡ ଖଂଡ କରି ଆଦୌ ଉପଭୋଗ କରିହେବ ନାହିଁ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ମଧ୍ୟବିତ୍ତମାନଙ୍କର ଏକ ସୁପରିଚିତ ଜୀବନ-ପ୍ରବାହକୁ ଗୁରୁପ୍ରସାଦ ନିଜ କବିତାରେ ଲିପିବଦ୍ଧ କରିଥିବାରୁ କବିତାଗୁଡ଼ିକ ଏ ମାଟିର ନିକଟତର ହୋଇ ପାରିନ୍ତି । 'କାଳପୁରୁଷ'ର ଅନେକ ଅଂଶ ସରଳତା, ସ୍ୱଚ୍ଛତା ଓ ବୋଧତାର ଉଦାହରଣ ରୂପେ ବ୍ୟବହୃତ ହୋଇ ପାରିବ । ଏ ଭାଷାର କବିତାକୁ ଚିନ୍ତାଶୀଳ ଲୋକଙ୍କ ମଧ୍ୟକୁ ଫେରାଇ ଆଣିବାରେ ଗୁରୁପ୍ରସାଦ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛନ୍ତି । କୌଣସି ଏକ ଆବେଗ ବା ପ୍ରେରଣାର ପ୍ରବଳ ଚାପ ନ ପଡ଼ିବା ଯାଏଁ ସେ କବିତା ଲେଖି ପାରନ୍ତି ନାହିଁ ।

ସେଇଥିଯୋଗୁ ହିଁ ବୋଧହୁଏ ତାଙ୍କ ନିକଟରୁ ଖୁବ୍ ଅଳ୍ପ କବିତା ପଦାକୁ ଆସି ପାରନ୍ତି ।

ଗୁରୁପ୍ରସାଦ ଖୁବ୍ ଅଳ୍ପ ଲେଖନ୍ତି ।

ଏହା ହିଁ ମୋର ଅଭିଯୋଗ ।

× × ×

କେତେକ ସମାଲୋଚକଙ୍କ ମତରେ ଗୁରୁପ୍ରସାଦ ହେଉଛନ୍ତି ଓଡ଼ିଆ ଭାଷାରେ ଇଂରାଜୀ କାବ୍ୟଧାରାର ଜଣେ ପ୍ରଧାନ ସାଧକ । ମାତ୍ର ତାଙ୍କ କବିତାରେ ଯଥେଷ୍ଟ ଶୈଳୀଗତ ଇଂରେଜିଆ ଗୁଣ ଥିଲେ ହେଁ, ତାଙ୍କ କବିତାର ଭୂଦୃଶ୍ୟ, ଚରିତ୍ର, ଘଟଣା, ପରିବେଶ ଓ ସଂଳାପରେ ଯେଉଁ ଓଡ଼ିଆତ୍ୱ ରହିଛି, ସେଥିଯୋଗୁଁ କବିତାର ପ୍ରଶଂସାରେ ଅଟକି ନ ଯାଇ ମୁଁ ବାରଂବାର କବିତାର ନିକଟତର ହୁଏ । ତେଣୁ ଗୁରୁପ୍ରସାଦଙ୍କୁ ମୁଁ ଇଂରେଜୀ ଶୈଳୀ ଓ ଓଡ଼ିଆ ଜୀବନର କବି ଭାବରେ ଗ୍ରହଣ କରି ଆସିଛି ।

ଆଉ କେତେକ ସମାଲୋଚକ କହନ୍ତି ଯେ ଗୁରୁପ୍ରସାଦଙ୍କ କବିତାରେ କୌଣସି ପ୍ରକାର ସାମାଜିକ ପ୍ରତିବଦ୍ଧତା ନାହିଁ । ମାତ୍ର ସବୁ କବିତା ବା କଳାକୃତିରେ ପ୍ରତିବଦ୍ଧତାର ସନ୍ଧାନ ହୁଏତ ଏକ ନିର୍ଦ୍ଦିଷ୍ଟ ଜାତୀୟ କବିତାର ଗୋଷ୍ଠୀକରଣ ସକାଶେ ସହାୟକ ହୋଇପାରେ । ସାମାଜିକ ପ୍ରତିବଦ୍ଧତା ନିମ୍ନନକାଳେ ଭଲ କବିତାର ଏକ ଅତି ଆବଶ୍ୟକମନ୍ତ୍ର ଉପାଦାନ ହୋଇ ନ ପାରେ । ଗୁରୁପ୍ରସାଦଙ୍କ କବିତାରେ ଏହି ଉପାଦାନର ଅଭାବ ଯୋଗୁଁ, ଏହା ଜନ-କବିତା, ଲୋକ-କବିତା ହୋଇ ନ ପାରେ । ତାଙ୍କ ଭାଷାର ସାଂଭ୍ରାନ୍ତ୍ୟ ଯୋଗୁ ହିଁ ସେ ପଲ୍ଲୀବାସୀ ନିରକ୍ଷର ଲୋକଙ୍କ ସକାଶେ ଦୁର୍ବୋଧ ମନେ ହେବେ । ମାତ୍ର ଆମେ କଣ ଚିରଦିନ ପାଇଁ ଆଶା କରିବା ଯେ, ଲୋକେ ପଲ୍ଲୀବାସୀ ଓ ନିରକ୍ଷର ହୋଇ ରହିଥାନ୍ତୁ ?

ତି

ନିଜର ସମସ୍ତ ଓ ପରିବେଶକୁ ସେ ଯେଉଁ ଚମତ୍କାର ଢଂଗରେ ନିଜର କବିତାରେ ଜୀବନ୍ତ କରି ପାରିଛନ୍ତି, ତାହା ଯେତେ ପରିଚିତ ମନେ ହେଲେ ହେଁ, ସର୍ବଦା ଅନନୁକରଣୀୟ । ଏହି କାରଣରୁ ଓଡ଼ିଆ କବିତା ଆଲୋଚନାରେ ସେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ।

—ପ୍ରଫୁଲ୍ଲ କୁମାର ତ୍ରିପାଠୀ



# ଗୁରୁପ୍ରସାଦ ଓ ମୁଁ

୧। ଗୁରୁପ୍ରସାଦ ୧୯୬୦ ଅଗଷ୍ଟରେ 'ଓ୍ୱେଷ୍ଟଲାଣ୍ଡ'ର କଟକ ସଂସ୍କରଣ 'କାଳପୁରୁଷ' ପ୍ରକାଶ କଲେ ।

୨। ଗୁରୁପ୍ରସାଦଙ୍କ କାବ୍ୟ ଭାଷାର ଚମତ୍କାରିତା ଓ ରୂପକଳ୍ପ ତତ୍କାଳୀନ ତରୁଣ ସ୍ରଷ୍ଟାଙ୍କୁ ପ୍ରଭାବିତ କଲା । ପଦ୍ୟର ଛନ୍ଦର ସାଫଲ୍ୟ ମଧ୍ୟ ଅନେକ କବିଙ୍କୁ ଅନୁରୂପ ଛନ୍ଦ ମାଧ୍ୟମରେ ପରୀକ୍ଷା-ନିରୀକ୍ଷା କରିବାକୁ ଆକୃଷ୍ଟ କଲା ।

୩। ଆନ୍ତର୍ଜାତିକ କାବ୍ୟ-ଧାରା ସହିତ ଓଡ଼ିଆ କବିତାକୁ ସଂଯୁକ୍ତ କରିବାପାଇଁ ହରି ବାବୁ ଓ (ପ୍ରାୟ ୧୯୭୦ ପର୍ଯ୍ୟନ୍ତ) ରମାକାନ୍ତ ବାବୁ ଉଦ୍ୟମ କରିଥିଲେ । 'କାଳପୁରୁଷ' ଓଡ଼ିଆ କବିତା ବିଚାର କ୍ଷେତ୍ରରେ ଏକ ସ୍ୱୀକୃତିମାନ (standard) ପ୍ରତିଷ୍ଠା କଲା । ଆଧୁନିକ କାବ୍ୟ ଚେତନାର ଯଶସ୍ୱୀ ସମା-

୧। ୧୯୬୦ରେ ବିଧିବଦ୍ଧଭାବେ ମୁଁ କବିତା ଲେଖା ଆରମ୍ଭ କଲି ଏବଂ ମନଯୋଗପୂର୍ବକ 'କାଳପୁରୁଷ' ଅଧ୍ୟୟନ କଲି ।

୨। ଆମେ (ସୌଭାଗ୍ୟବାବୁ, ଦେବଦାସ, ରାଜେନ୍ଦ୍ର, ପ୍ରତିଭା, ମୁଁ ଇତ୍ୟାଦି) କବିତା ଲେଖିବା ଆରମ୍ଭ କରିଲା ବେଳକୁ ହରି ରାଉତରାୟ, ରମାକାନ୍ତ ରଥ ଓ ଗୁରୁପ୍ରସାଦ ମହାନ୍ତି ଯଶସ୍ୱୀ ସ୍ରଷ୍ଟାଭାବେ ସ୍ୱୀକୃତି ହୋଇଥିଲେ । ତେଣୁ ଆମ କାବ୍ୟାନୁଭବକୁ ଶକ୍ତିମନ୍ତ କରିବା ପାଇଁ ଆମେ ସେମାନଙ୍କ କାବ୍ୟ ପୃଷ୍ଠଭୂମି ସଂପର୍କରେ ଅବହିତ ରହି ପରୀକ୍ଷା ନିରୀକ୍ଷା କରୁଥିଲୁ ।

୩। ସାହିତ୍ୟ ସୃଷ୍ଟି ମୁଖ୍ୟତଃ ସ୍ୱୀକୃତ ଲେଖା ନିରିଖରେ ପ୍ରତିଦ୍ୱନ୍ଦ୍ୱୀ ବା ଗୌଣ ସ୍ରଷ୍ଟାଙ୍କ ପାଇଁ ସ୍ୱୀକୃତର ପକ୍ଷ ସମର୍ଥନ ହୋଇଥିବାରୁ ସମକାଳୀନ ସ୍ରଷ୍ଟାମାନେ କବିତା ସୃଷ୍ଟି କ୍ଷେତ୍ରରେ ସ୍ୱକୀୟ ମୁଦ୍ରାଙ୍କନ ନିମନ୍ତେ ପ୍ରୟାସୀ ହେଲେ ଏବଂ ଗୁରୁପ୍ରସାଦ ହରି ରାଉତରାୟ ଓ ରମାକାନ୍ତଙ୍କ କାବ୍ୟ ସିଦ୍ଧିକୁ ସ୍ୱୀକାର କରି ତଥା ଆମର ପାରମ୍ପରିକ ପୃଷ୍ଠ-ଭୂମି, ଗୀତିମୟ ଐତିହ୍ୟ (Lyrical tradition) ଆଧ୍ୟାତ୍ମିକ ସମ୍ବେଦନଶୀଳତାକୁ ସ୍ମରଣ ରଖି ଉତ୍ତର "କାଳପୁରୁଷ" ଯୁଗର କବିରୂପେ ମୁଁ କବିତା ସୃଷ୍ଟି କରିଛି ।

୪। ନିଜ କବିତାର ସମୀକ୍ଷା କରିବା ଅନାବଶ୍ୟକ ହେଲେ ମଧ୍ୟ ପ୍ରତ୍ୟେକ କବିକୁ ନିଜ କବିତା

ଲେଚକ ରୂପେ ଶ୍ରୀଯତୀନ୍ଦ୍ର ମୋହନ ମହାନ୍ତିଙ୍କ ପ୍ରତିଷ୍ଠିତ କଲି ।

୪। ଗୁରୁପ୍ରସାଦକେନ୍ଦ୍ରୀୟ ସାହିତ୍ୟ ଏକାଡେମୀ ପୁରସ୍କାର ପାଇବାପରେ ଓ ତାଙ୍କ କବିତାର ବିବିଧ ବିଭିନ୍ନ ଭାଷାରେ ଅନୁବାଦ ପ୍ରକାଶିତ ହେବାପରେ ତାଙ୍କଠାରୁ ଓଡ଼ିଆ କବିତାଅଧିକ କିଛି ଲାଭ କରି ପାରିଲି ନାହିଁ । ସମ୍ଭବତଃ ନୁହଁନ୍ତି, ସେ ଯେମିତିଗୋଟିଏଯୁଗର କବି ହୋଇ ରହିଗଲେ । କୋଡ଼ିଏଟି କବିତା ଓ ଦଶଟି ସନେଟ୍ ମଧ୍ୟରେ ତାଙ୍କକାବ୍ୟ ପ୍ରତିଭା ସୀମିତ ରହିଲା ।

ଅଲଖିତଭାବରେ ସମୀକ୍ଷା କରିବାକୁ ହୋଇଥାଏ । ସମୀକ୍ଷକମାନଙ୍କର ମନ୍ତବ୍ୟ କେତେବେ କେତେବେ ସତ୍ୟର ନିଷ୍ଠୁର ଦର୍ପଣରେ ନିଜକୁ ଦେଖିବା ପାଇଁ ସୁଯୋଗ ଦିଏ । ଏଯାବତ୍ ରଚିତ ମୋର କବିତା ସମ୍ପର୍କରେ ମୁଁ ପ୍ରାୟତଃ ବିଜ୍ଞ ସମାଲୋଚକ ମାନଙ୍କଠାରୁ ଅନୁକୂଳ ମନ୍ତବ୍ୟ ପାଇଛି । ଜଣେ ଦୁଇଜଣ ଅସହିଷ୍ଣୁ ସମାଲୋଚକ ଯେଉଁମାନେ ଓଡ଼ିଆ କବିତାକୁ ନ୍ୟୂନ ଦୃଷ୍ଟିରେ ଦେଖନ୍ତି ସେମାନେ ଅରୁଚୀୟ ନିନ୍ଦା କରିଛନ୍ତି । ସେମାନେ ଚିରଯୁଗେ ଯୁଗେ ଥାଆନ୍ତି ଏବଂ ରହିବେ ଇ । ତେବେ ମୋ କବିତାକୁ ଗୁରୁପ୍ରସାଦଙ୍କ ସହିତ ତୁଳନା କରିବାକୁ ଯଦି କ୍ଷୁଦ୍ର ପାଏ, ମୁଁ କହିବି ସେ ଆମର କାବ୍ୟଗୁରୁ । ଏବଂ ଆମ୍ଭେମାନେ ତାଙ୍କର ଅନୁବାଦ ।

## ଶ୍ରୀହରିହର ସତ୍ୟନାରାୟଣ ନନ୍ଦ

ଚଳିତ ଅନୁଭୂତିର ସଂସ୍ପର୍ଶ ସତେ ଯେମିତି ଅସିଗଲା କେତେ ଗୁରୁପ୍ରସାଦଙ୍କର 'ସମୁଦ୍ରସ୍ନାନ' ପରେ । ଅନୁଭୂତିର ବହୁବିଧ ଅଭିପ୍ସା ଭିତରେ ଯେଉଁ ନମ୍ର ମଣିଷଟି ଅଙ୍ଗୀକାର କରିନେଇଥିଲା ଦୁନିଆକୁ ଓ ଦୁନିଆର ଦାଉକୁ ବିନା ସାଲିସରେ, ସେ କାବ୍ୟ ପୁରୁଷଟି ଯେମିତି ସମୁଦ୍ର ସ୍ନାନପରେ କଟୋଉଥାଉ ଡାକି ଏକ ପରିଚୟାରୁ ବ୍ରତୀ ହୋଇଗଲେ ଆମ ସାମ୍ନାରେ । ତଥାପି, ସେ ପ୍ରତିଦାତାରି ଚାଲିଚନ୍ତି

ଦେଖିବାକୁ କେତେକ ଶିଳ୍ପୀ ଓ ପାଠକଙ୍କର ଉନ୍ନିଦ୍ର ଅପେକ୍ଷା ।

କବି ଗୁରୁପ୍ରସାଦଙ୍କର କାବ୍ୟମାନସ ଅତୀତକୁ ବର୍ତ୍ତମାନ ସହ ଯୋଡ଼ି ବର୍ତ୍ତମାନକୁ ଶିଳାଲେଖ କରି ଭବିଷ୍ୟତକୁ କେଉଁ ଉଦ୍ଧତ ନିର୍ଲିପ୍ତ ହାତ ବଢ଼ାଇଥିଲେ କି, ଅତୀତ ଓ ବର୍ତ୍ତମାନର ଭଙ୍ଗାଗଢ଼ା ଭିତରେ ଠିଆହୋଇ କଷ୍ଟକ୍ଲୁଣ୍ଣ ସମାଜକୁ ଭଗଂବାଘ ଭଳି ତମୁଗଧ ଦୃଷ୍ଟିରେ ଚାହିଁଥିଲେ ସେକଥା ସମାଲୋଚକମାନେ କହିବେ । କିନ୍ତୁ 'ମୂଲ୍ୟାୟନ'ର ସମ୍ପାଦକଙ୍କର ଅନୁରୋଧରେ କବି ଗୁରୁପ୍ରସାଦଙ୍କ କାବ୍ୟମାନସକୁ ମୁଁ ଯେମିତି ଜାଣିଛି ତାର ସାମାନ୍ୟ ରୂପରେଖା ମାତ୍ର ଏ ଆଲୋଚନା ।

କବି ଗୁରୁପ୍ରସାଦଙ୍କ କଳ୍ପନା ଭିତରେ ଅଛି ଏକ ଭଙ୍ଗା ମଣିଷର ସ୍ୱପ୍ନ । ଆଶା ଓ ପ୍ରାପ୍ତିର ଲମ୍ବା ରାସ୍ତାକୁ ମାପିମାପି ମୋହଭଙ୍ଗର ସ୍ତୂପ ଉପରେ ଅବକ୍ଷୟୀ ଆଶାସ୍ୱପ୍ନର ସୁଗ୍ରୀବକଳି ସାଲିସ୍ । ଦୈହିକ ଓ ମାନସିକ ଯନ୍ତ୍ରଣା କର୍ଜରିତ ରସହୀନ ପରିବେଷ୍ଟନୀ ଭିତରୁ ମୁକ୍ତି ପାଇବାର ଉଦ୍ବେଳ ବିକଳ ଭାବ । ସମାଜର ଘୁଣଖିଆ ଭିତରେ ସର୍ବଗ୍ରାସୀ ଦୈହିକ କାମନାର ଉତ୍କଳଣାପ୍ରସୂତ ଅସହ୍ୟ ବ୍ୟର୍ଥତାର ଦୈନ୍ୟ ଉଲ୍ଲକାରେ ଓ ସମୁଦ୍ରର ନିଠୁର ସାମନ୍ତବାଦୀ ନିର୍ଦ୍ଦେଶନା ଭିତରେ କାବ୍ୟପୁରୁଷର ସଂଯତ ଓ ସୁସଂଯୋଜିତ ବ୍ରହ୍ମକେନ୍ଦ୍ରିକ ଆକାଂକ୍ଷା ଚେତନା । ଏ ଚେତନା ଭିତରେ ସୃଷ୍ଟି ପ୍ରସୂତିର ଅଭାବ ହିଁ କାବ୍ୟ-କାୟାକୁ ମୁହାଁଇ ନେଇଛି ଅବକ୍ଷୟକୁ ଠାଙ୍ଗର ଭୁଇଁକୁ ଯାହା ଅନତିକ୍ରମଣୀୟ ଓ ପରିହାସ ଅନୁଭୂତିମୟ ।

ସମୁଦ୍ର କୂଳରେ ବଢ଼ି ଉଠିଥିବା ଝାଉଁବଣର ମର୍ମର ଯେମିତି ତାର ସାଗରଜୀବନ ପାଇଁ ଏକାଂତ ବଶ୍ୟଚେତନା । ତାଭିତରେ ଅସହାୟ ମଣିଷର ଉଇଲଗା ବ୍ୟକ୍ତିତ୍ୱ । ଆଗକୁ ଯେତେ ମାଡ଼ିଯିବାର ଜିଜ୍ଞାସା ଥିଲେବି ଗୋଡ଼ ତଳୁ ଶୈବାଳ ଖସିଯିବାର ସନ୍ଦେହାଚ୍ଛନ୍ନ ଭାବରୁ ସେ ମୁକ୍ତ ନୁହେଁ; ତ୍ରିଶଂକୁଧର୍ମୀ କଂରୁ ଅକାଶିଗଙ୍ଗା । ହେତୁ ତ୍ରିଶଂକୁ ଗ୍ରିଷ୍ଟ ସ୍ୱପ୍ନ ପ୍ରବଣତା ଭିତରେ ଅନ୍ୱେଷଣ, ଆନ୍ଦୋଳନ ଓ ଶୃଙ୍ଖଳ ଶୃଙ୍ଖଳ ଭାବ ।

କବି ଗୁରୁପ୍ରସାଦଙ୍କ କାବ୍ୟମାନସ ସନ୍ଦେହାଚ୍ଛନ୍ନ ନୁହେଁ ବରଂ କେତେକ କ୍ଷେତ୍ରରେ ଶଂକାକୁଳ । ଚନ୍ଦ୍ରବର୍ଣ୍ଣା ପୃଥିବୀ, ସେଠି ସ୍ୱପ୍ନ ଅଛି କଂରୁ ରଂଗ ନାହିଁ, ଗଛ ଅଛି, ଛାଇ ନାହିଁ । ସବୁ ଥାଇ ମଧ୍ୟ ପାଇବାଟା ଦୁର୍ମୂଲ୍ୟ । ନାୟିକା ତା ସାମ୍ନାରେ ସମ୍ଭୋଗର ବସ୍ତୁଟିଏ । ପ୍ରେମର ଅନ୍ୟନାମ କାମ, ମମତାର ନାମ ମିଳନ, ବିଯୋଗର ଶେଷଫଳ କେବେ ଶୂନ୍ୟ ନୁହେଁ । ଏସମସ୍ତ ଚେତନା ପ୍ରତି ସଚେତ ଥାଇ ମଧ୍ୟ ନିରୁପାୟ ନାୟକ ଖୋଜେ ଗୋଟିଏ ମୁହୂର୍ତ୍ତର ଦୈହିକ ଶାନ୍ତି, କାରଣ ଗୋଟିଏ ମୁହୂର୍ତ୍ତ ତାପାଇଁ ମୂଲ୍ୟବାନ ଅଭିଜ୍ଞତା । ପୌରୁଷ, ମ୍ରିୟମାଣ ହେଲେ ମଧ୍ୟ କ୍ଲୀବତ୍ୱରେ ଆଶ୍ଳେଷର ଆକାଂକ୍ଷା, ପରାଜୟରେ ତାର ସ୍ପଷ୍ଟ ସ୍ୱୀକାରୋକ୍ତି । ସେଠାରେ ତ୍ୟାଗପୂତ ପ୍ରଣୟ ନିଷ୍ଠା ଓ ମମତବିଦ୍ଧ ସାମଗ୍ରିକ ପ୍ରଣୟାନୁଭୂତି ସ୍ୱପ୍ନୀ ଜୀବନ ସଂଗ୍ରାମରେ କ୍ଷତ ବିକ୍ଷତ କାବ୍ୟମାନସ, ନିଜର ଦାୟିତ୍ୱ ଛକିଛିର ଛକରାସ୍ତାରେ ବାଟ ଖୋଜୁଥିବା କାବ୍ୟପୁରୁଷ ଭିତରେ ଅଭିମାନ ନାହିଁ । ବରଂ ଯାହାହେଉ ବର୍ତ୍ତମାନର ଗ୍ଲାନିବୋଧରୁ ମୁକ୍ତି ପାଇଁ ଉଦଗ୍ର କାମନାର ପରିସମାପ୍ତିରେ ସେ ବେଶୀ ଅଗ୍ରହୀ । ସେଠାରେ ମାନସିକ ସ୍ତରରେ ଉପେକ୍ଷିତ ବା ଶୂନ୍ୟତାବୋଧରେ ଜର୍ଜରିତ ଭାବ ବରଂ ସ୍ପୃହଣୀୟ, କଂରୁ ଦେହଜ ବାସନାର ଫୁଲଫୁଟା ମୁହୂର୍ତ୍ତକୁ ଆଗେଇ ଦେବା ଯନ୍ତ୍ରଣାମୟ ।

ହୁଏତ ସବୁ ଅବସ୍ଥା ଭିତରେ କାବ୍ୟପୁରୁଷ ବର୍ତ୍ତମାନକୁ ଅକଣ୍ଠ ପାନ କରିବା ପାଇଁ ଚିରନ୍ତନ ପ୍ରୟାସୀ । ଦେବଗାସୀ ସମୟ ଭିତରେ

(ଅବଶିଷ୍ଟାଂଶ ୧୪୬ପୃଷ୍ଠାରେ)

# ଆଖିର କପୋତ ମୋର

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧାପାଇ ପ୍ରତିଦିନ ଫେରିଆସେ ଏହି ପୃଥିବୀକୁ
ସେଇଁଠାରେ ତୁମେ କର ପ୍ରତିଦିନ ବଜନ ପ୍ରତୀକ୍ଷା
ଜରା ମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ଖୁଜିବାକୁ ।
ସମୁଦ୍ରର ଢେଉ ସବୁ ଶ୍ରେଷ୍ଠ ଶ୍ରେଷ୍ଠ ହାତ ପାପୁଲିରେ
ସ୍ଥବିର ବାଲିର ଦେହ ଯେବେ ଦିଏ ଆଉଁସି ଆଉଁସି
ମୁଁ ଯାଏ ବିବ୍ରତ ହୋଇ ଭେଦି ଖରା ଦିପହରର ପ୍ରେତ ଧୂସରତା
ମୋର ପିତୃ ପୁରୁଷର ସ୍ମୃତି ଖୋଜି ତୁମର ଏ ବିବର୍ଣ୍ଣ ଦେହରେ-
ତୁମେ କୁହ କଥା କୁହ ଘାସ ଆଉ ପଥରର ଗୋପନୀୟ କଥା
ଘାଟିବଣ ଜଙ୍ଗଲର କଥା ଯେତେ ଶିଉଳି ଶାମୁକା
ଆଉ ସମୁଦ୍ରର କଥା ।

ବିଷର୍ଣ୍ଣ ରାତିରେ ଛିନ୍ନ ବଉଦରେ ବିବର୍ଣ୍ଣ ଜହ୍ନର
ଏ ପାରରୁ ଭାସିଯାଇ ସେ ପାରରେ ମରିଯିବା କଥା—
ଚଇତର ଜୀର୍ଣ୍ଣ ଦେହ ଏ ବାଲିର ଶ୍ରେଷ୍ଠ ଶ୍ରେଷ୍ଠ ଭଉଁରୀ ଭିତରେ
ଏପାଖ ସେପାଖ ଯାଏ ଉଡି ଉଡି ତୁମେ ନିଅ ସାଉଁଟି ସାଉଁଟି
ତୁମେ ପୁଣି ଭଲପାଅ ତୁମେ ପୁଣି ହାତ ଧରି ଡାକ
ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ୍ତ କେଉଁଠି ?
ମେଘର ଇସ୍ପାତ ଦେହ ଛୁଇଁ ପୁଣି ବାଧାପାଏ ସେଠି ତୁମ
ମନର କପୋତ ।

ଆଖିର କପୋତ ମୋର ଫେରିଆସେ ଯେତେବେଳେ
ଆକାଶର ଭ୍ରାନ୍ତ ପରି ହୋଇ
ତୁମର ଦେହରେ ଏହି କ୍ଲାନ୍ତି ଆଉ ଶୋକଶୋଷ ଉତ୍ତେଜନା
ଖେଦ ଆଉ କୋହର ଭିତରେ

ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୁଦ୍ରର ଜଳ ।
ନିସ୍ତବ୍ଧ ଦୁପହରେ ପଖଝଡ଼ା ଶୁଭେନାହିଁ ଖଗର ନିଶ୍ୱାସ,
ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ
ମନେ ମୋର ପଡ଼ୁନାହିଁ କେବେ ମୋର ଆଖିର କପୋତ
ତୁମର ସନ୍ଧାନ ଦିନେ ପାଇଥିଲା କେଉଁ ବା ଜନ୍ମାନ୍ତରି ସନ୍ଧ୍ୟାର
ପ୍ରାନ୍ତରେ ।

ଦେହ ମନ ଆତ୍ମା ହେଉଛି 'ସମୁଦ୍ର ସ୍ନାନ'ର ମୁଖ୍ୟ କାବ୍ୟ ସୁର । ଦେହର ଯନ୍ତ୍ରଣାରେ ଅସ୍ଥିର କାତର ଗୁରୁପ୍ରସାଦଙ୍କ ମନର ସଂଶୟର କୁହେଳି ଭିତରୁ ଜନ୍ମ ନେଇଛି ଏକ ରୋମାଣ୍ଟିକ ବାସ୍ତବ ଚେତନାଶୀଳ କବିତା 'ଆଖିର କପୋତ ମୋର' । କବିତାର ସ୍ୱର ଓ ସ୍ପନ୍ଦନ କଳ୍ପନା ଆଉ ବାସ୍ତବର ବିମିଶ୍ର ସମନ୍ୱୟ । 'କପୋତ'କୁ କବିଦୃଷ୍ଟିର କଳ୍ପନା ରୂପେ ଗ୍ରହଣ କରାଯାଇପାରେ । ମୁକ୍ତିର ଗୃରଣ ଭାବରେ ମଧ୍ୟ ନିଆଯାଇପାରେ । କାରଣ କବିଙ୍କର କଳ୍ପନାଶ୍ରୟୀ ଯୌକ୍ତିକତାର ଯଥାର୍ଥ ବିଚାର ବିଶ୍ଳେଷଣ ସହଜ କଥା ନୁହେଁ । ଅନେକ ସ୍ଥଳରେ ଆନୁମାନିକତା ଉପରେ ନିର୍ଭର କରିବାକୁ ହେବ ।

ବାସ୍ତବବାଦୀ ଭାବୁକ କବି ତାଙ୍କର ଦୃଷ୍ଟିର ବିହଙ୍ଗକୁ ମୁକ୍ତି ଦେଇଛନ୍ତି ଆକାଶର ସୀମାହୀନ ଅନନ୍ତ ପଥରେ । ମୁକ୍ତ ଆକାଶ ହେଉଛି ମୁକ୍ତିର ସାଗର, ଯାହା କବି ଆତ୍ମାର ଅନ୍ୱେଷା । ପୃଥିବୀର ନାଗଫାଶର ବନ୍ଧନରେ ପୀଡ଼ିତ, ଆସକ୍ତିର ଜ୍ୱାଳାରେ ଜର୍ଜରିତ ଆତ୍ମାକୁ କବି ଉତ୍ତରଣର, ଅନାସକ୍ତିର, ମୁକ୍ତିର ମହାନ ସଂଗୀତ ଶୁଣାଇବାକୁ ଯେତେବେଳେ ଆକାଶୀ ପଥର ସନ୍ଧାନ ଦେଇଛି, ଦେଖିଛି ଆକାଶ ଅସୀମ ଅନନ୍ତର ଅମୃତ ସ୍ୱାଦରେ ରୁଚିକର ଜୀବନର ମୁକ୍ତି-ମନ୍ତ୍ର ନୁହେଁ; ଏହା ବାସ୍ତବର ସୀମିତ ଧୂଳିର ସ୍ପର୍ଶରେ

କଠିନ । ଅବାଧ ମୁକ୍ତ ପରିବର୍ତ୍ତେ ସେଠି ଅଛି ବାସ୍ତବର କଠିନ ଗତିରୋଧକ ସ୍ତମ୍ଭ । ମଣିଷ, ଏଇ ପୃଥିବୀର ମଣିଷ, ଦେହଧାରୀ ମଣିଷ ପୃଥିବୀର, ଦେହର ଅସ୍ତିତ୍ୱକୁ ଅସ୍ୱୀକାର କରି ନ ପାରେ । ଫଳରେ ଆକାଶର 'ଇସ୍ପାତ ଦେହ'ରେ ବାଧା ପାଇ ଫେରି ଆସୁଛି ତାର ସେଇ ଦୁଃଖ ଶୋକ ଜରାଜର୍ଜର ରୋଗ ବ୍ୟାଧିଗ୍ରସ୍ତ ପରିଚିତ ପୃଥିବୀକୁ । ଏଇ ପୃଥିବୀର ଧୂସର ଦେହ ସମ୍ବନ୍ଧ କବି ଆତ୍ମାର ନିତ୍ୟ ପରିଚୟ । ସେଠି ନଥାଉ ବିଶ୍ୱାସର ସବୁଜ ପ୍ରଶ୍ରୟ, ନ ଥାଉ ବଞ୍ଚିବାର ସହଜ ପ୍ରତ୍ୟୟ । ତଥାପି ସେଇ ଅବକ୍ଷୟତା ଆଉ ଦୁର୍ଭାଗ୍ୟରେ ଆକ୍ରାନ୍ତ ପୃଥିବୀକୁ ଜାଣିବାକୁ, ଦୁଃଖ ଜରାଗ୍ରସ୍ତ ଜୀବନର ପରିଚୟ ପାଇବାକୁ ମଣିଷର ନିରବଚ୍ଛିନ୍ନ ସଂଗ୍ରାମ । ପୃଥିବୀ ମଣିଷମାନଙ୍କ ଏକ ରହସ୍ୟର ଉପନିବେଶ । କଳ୍ପନା ପ୍ରାଣ କବିଆତ୍ମା ବାସ୍ତବର କଠିନ ସ୍ପର୍ଶରେ ପ୍ରତିହତ ହୋଇ ଫେରି ଆସୁଛି ସେଇଠିକୁ, ଯେଉଁଠି କାବ୍ୟ ନାୟିକା ଏକାକୀ ଜୀବନକ୍ଳାନ୍ତ ପରିବେଶର ଗୋପନ ଦ୍ୱାର ଉଦ୍‌ଘାଟନ କରିବାକୁ ସଂଗ୍ରାମରତ । ଶୂନ୍ୟତା ଆକାଶରେ ନାହିଁ; ମୁଠା ମୁଠା ଶୂନ୍ୟତା ଭରି ରହିଛି ମଣିଷର ନିଃସଙ୍ଗ ଏକକତାରେ । କବି ନିଜ ଶୃଙ୍ଖଳିତ ଏଇ କଠିନ ବାଧାର ଉପର ବକ୍ଷକୁ ଅତିକ୍ରମ କରିବା ପାଇଁ, ମାତ୍ର ଅସହାୟ ଏକ ଯନ୍ତ୍ରଣା ନେଇ ଫେରିଆସୁଛି ତାର ବାସ୍ତବ ପରିବେଶକୁ । ଜରା ମୃତ୍ୟୁ ବ୍ୟାଧି ଜୀବନର କ୍ଷୟିଷ୍ଣୁ ରୂପ—ଆଉ ତାରି ଭିତରେ ସଂଗୋପିତ ରହିଛି ଜୀବନର ପ୍ରକୃତ ଅର୍ଥ । ଜୀବନକୁ ବୁଝିବାର ବାଟ ପଡ଼ିଛି ଦୁଃଖ ବ୍ୟଥା ଆଶଙ୍କା ଆଉ ବିଫଳତାର ପରିଧି ଭିତରେ । ଗୁରୁପ୍ରସାଦଙ୍କ କବିତାର ପରିବେଶ ହେଉଛି ଜରା, ବ୍ୟାଧି, ମୃତ୍ୟୁ, ବିକ୍ଷୁବ୍ଧତା, ଜୀର୍ଣ୍ଣତା, ବିବର୍ଣ୍ଣତା ଆଉ ସ୍ଥବିରତାର ପରିବେଶ । ଏ ସବୁ ଅବକ୍ଷୟତାର ପ୍ରତୀକ ।

ସମୁଦ୍ର ଆଉ ବାଲୁକାରାଶି ପ୍ରେମିକ ଓ ପ୍ରେମିକାର ଭୂମିକାରେ ଅବତୀର୍ଣ୍ଣ । ସମୁଦ୍ରର ଉଚ୍ଛ୍ୱାସ ନେଇ କବି ଆତ୍ମା ଆତ୍ମପ୍ରକାଶ କରିଛି । ବାଲିର ସ୍ଥବିର ଦେହ ପରି ନାୟିକାର ଦେହ ବିବର୍ଣ୍ଣ । ସ୍ରୋତ ସ୍ରୋତ ହାତ ମାପୁଥି କୈଶୋରର ବା ଅତୀତର ସ୍ମୃତି ସନ୍ଧାନ । ସମୁଦ୍ର ମମତାନୋନ୍ମଳ ତୁର୍ଣ୍ଣୋର, ଅତୀତର ସ୍ମୃତି ସ୍ମରଣରେ ସ୍ଥବିର ବାଲି ଦେହରେ ଭରି ଦେଇଛି ଜୀବନର ଉଷ୍ଣତା । ଏଇ ରୋମାଣ୍ଟିକ୍ ପରିବେଶରେ ନାୟକ ଗଭୀର ହୃଦୟର ତପ୍ତ ଧୂସରତା ଭେଦି ଅର୍ଥାତ୍ ସକଳ ସାମାଜିକ ମାନ୍ତର ପ୍ରତିବନ୍ଧକକୁ ଏଡ଼ି ନାୟିକାର ବିବର୍ଣ୍ଣ ଦେହରେ ଖୋଜିଛି ଅତୀତର ସ୍ମୃତି—ଦୈହିକ କାମନାର ଉତପ୍ତ ପ୍ରବାହ । ନାୟିକା ହେଉଛି ବାତୁଳ, ଜୀବନପ୍ରେମୀ । ଘାସ, ପଥର, ଘାଟିବଣ, ଜଙ୍ଗଲ, ଶିଉଳି, ଶାମୁକା ଆଉ ସମୁଦ୍ର—ଲାଞ୍ଛିତ ମନର ବିସ୍ମୃତ ସୀମାସ୍ଥାନ ପୁଣି ଖଣ୍ଡ ଖଣ୍ଡ ହୃଦୟର ଶୋଭାଗାର । ଏ ସବୁ ଅତୀତର ସ୍ମୃତି ହେଉଛି ପୁଣି ଯୌନ ଚମକଲୁର ଆଭାସ, କବିଙ୍କର କାବ୍ୟିକ ଚେତନାକୁ ସ୍ପଷ୍ଟତର କରିବାରେ ସହାୟକ ।

ଦୈନନ୍ଦିନ ଜୀବନର ପ୍ରେମମର୍ମରିତ ଉଜ୍ଜ୍ୱଳତା ଭିତରେ ଧସେଇ ପଶିଯାଏ ରାତିର ବିଷର୍ଣ୍ଣତା । ଅଖଣ୍ଡ ଉଦ୍‌ଦୃଷ୍ଟ ଜୀବନ ସମାରୋହ ଛିନ୍ନବଉଦ ପରି ଖଣ୍ଡ ବିଖଣ୍ଡ ହୋଇପଡ଼େ । ଜୀବନର ଅପୂର୍ଣ୍ଣତା, ବିଚ୍ଛିନ୍ନତା ସହଜରେ ବାରି ହୋଇପଡେ । ବିଷର୍ଣ୍ଣ ରାତି, ବିବର୍ଣ୍ଣ ଜହ୍ନ, ଛିନ୍ନ ବଉଦ—ଏସବୁ କବି ଅନୁଭୂତିର ଏକ ନିବନ୍ଧ, ଅନ୍ଧକାର ଓ ଅସହାୟତା ତଥା ବିଫଳତାର ସଙ୍କେତ । 'କାଲି ଏ ପାଖରୁ ଉସିଯାଇ ସେପାଖରେ ମଉଳିବା କଥା'—ଏଇ ଅସ୍ତମିତ ଜହ୍ନ ମୃତ୍ୟୁ ଚେତନାର ସୂଚକ ନୁହେଁ । ଏହା ଜନ୍ମରୁ ଜନ୍ମାନ୍ତର ବା ଭବରୁ ଭବାନ୍ତର ସଂକ୍ରମଣର କଥା କହେ ।

ନବୀନଙ୍କର ବିଭିନ୍ନ କବିତାରେ ଦେହକୁ ନେଇ ଅନେକ ଉକ୍ତି ସ । ଶରୀରର ଚରମ ମୂଲ୍ୟ ଗନ୍ଧ ଗନ୍ଧ ଗସ୍ଥା ଗ୍ରସ୍ଥା, ଦେହର ସ୍ପନ୍ଦନ, ରକ୍ତର ଗୋପନ ନୂପୁର,—ବିଭିନ୍ନ ଅର୍ଥରେ ସଂଯୋଜିତ । ଏଠାରେ ଦେହ ତୃଷ୍ଣା ବା ଶୁଷ୍କତାର ପ୍ରତୀକ । ଦେହର ଧମନୀରେ ଯେପରି ବାଲୁକା ଦଂଶନରେ ଉତ୍ତାପ ସୃଷ୍ଟି ହୁଏ, ସେମିତି ଦେହର ବାଳିରେ ଜମିର ପ୍ରେମ ଅନେକ ସ୍ମୃତିର ଆବର୍ତ୍ତ ରଚନା କରେ । ଅତୀତର ସେଇ ବିକ୍ଷିପ୍ତ ସ୍ମୃତିକୁ, ଜୀବନର ମାଧୁର୍ଯ୍ୟ କଣାକୁ, ନାୟିକା ଟାଣିନିଏ—ବିଫଳ ପ୍ରେମକୁ ସଫଳ ସୌନ୍ଦର୍ଯ୍ୟରେ ପୁଣି ଭରିଦେବାପାଇଁ, "ତୁମେ ମୁଁ ଓ ଭଲପାଅ ତୁମେ ପୁଣି ହାତ ଧରି ଡାକ"—ସେ ବିଏ ପ୍ରୀତିର ଆହ୍ୱାନ । ଏଇ ଡାକ କାବ୍ୟପୁରୁଷ ଅନ୍ତରକୁ ଆନ୍ଦୋଳିତ କରିବାର ମାତ୍ରାଧିକ କ୍ଷଣରେ ମନରେ ଉଠେ ସଂଶୟର ଝଡ଼ । ଜୀବନର ଏକ 'ଶୀର୍ଷ' ମୁହୂର୍ତ୍ତରେ, ଆବେଗମୁଖର ସୁଖକର କ୍ଷଣଟିରେ କବି ମନର ଜିଜ୍ଞାସା—'ତୁମର ଆତ୍ମା କି କାହିଁ ? ମୋ ଦେହ ବା ଜୀବନ କେଉଁଠି ?'—ଏଇ କାବ୍ୟ ଜିଜ୍ଞାସାହିଁ ଆଧୁନିକ ମାନବର ସଂଶୟ-ସଂକ୍ଳିଷ୍ଟ ମନର ନିଟୋଳ ପ୍ରକାଶ । ସଂଶୟହିଁ ପ୍ରେମର ବିଫଳ ପରିଣତି ପାଇଁ ଦାୟୀ । ପରିପାର୍ଶ୍ୱକୁ ଅସ୍ୱୀକାର କରି ସେଇ ଅନ୍ଧମାନବର ଜୀବନ ଉପଭୋଗର ଯେଉଁ ଅନାବିଳ ଅନାହତ ଆକାଂକ୍ଷା ଆଜିର ମଣିଷ ହରାଇ ବସିଛି । ଏଠାରେ ଇଲିୟଟ୍‌ଙ୍କର ଚିନ୍ତାଧାରା କବିଙ୍କୁ ଯେତେ ପ୍ରଭାବିତ କରି ଥାଉନା କାହିଁକି ନବୀନଙ୍କର ବ୍ୟକ୍ତିଗତ ଅନୁଭୂତିର ସ୍ୱଚ୍ଛତା ସହଜରେ ଉପଲବ୍ଧି କରିହୁଏ । କବିଙ୍କର ଜିଜ୍ଞାସା ଓ ଅନ୍ୱେଷା ଭିତରୁ ଜଣାଯାଏ କବିପ୍ରାଣ ଏଠି ଆତ୍ମ ଅନୁସନ୍ଧାନରେ ବ୍ୟସ୍ତ । ଦେହ ଓ ଆତ୍ମାର ମିଳନର ସୁବର୍ଣ୍ଣ କ୍ଷଣଟି କେତେବେଳେ ମଣିଷକୁ ଫାଙ୍କି ଦେଇ ତାକୁ ଢାଙ୍କି ଦେଇଛି ସଂଶୟର ମେଘରେ ।

ଜୀବନର ଅସମ୍ପୂର୍ଣ୍ଣତା ଓ ଅସଫଳତାର ଛବି ଏଇ କବିତାଟି ଭିତରେ ଉଚ୍ଚାରିତ । ଦେହ ଓ ଆତ୍ମାର ମିଳନରେ ଜୀବନର ପୂର୍ଣ୍ଣତା, ସଂଶୟରେ ପୂର୍ଣ୍ଣତା ଖଣ୍ଡିତ ହୁଏ । ଏଇ ସଂଶୟ ପୁଣି ସଂକ୍ରମିତ ହୋଇଛି ନାୟିକାର ମନରେ । ପ୍ରେମର ସ୍ୱପ୍ନ ନେଇ ଭସି ଯାଉଥିବା ଲଘୁପକ୍ଷ ମେଘ ଉତ୍ପାତର ଅର୍ଥାତ୍ ବାସ୍ତବର କାଠିନ୍ୟ ନେଇ ପାଇଛି ନାୟିକାର ପ୍ରୀତି ଉଚ୍ଛ୍ୱସିତ ହୃଦପ୍ରବଣ ମନ । ନାୟିକାର ଆଶା ଆଉ ନାୟକର ସ୍ୱପ୍ନ ଭିତରେ ଜୀବନ ଯୌବନର ମହାର୍ଘ ମୁହୂର୍ତ୍ତ ବିତିଯାଏ ସଂଶୟ ଆଉ ଆତ୍ମ ଅନ୍ୱେଷଣର ଅଜସ୍ର ଭ୍ରାନ୍ତି ଭିତରେ । ଦୁଃଖ, ଖେଦ, ଜୈବିକ କ୍ଷୁଧା ଆଉ କ୍ଲାନ୍ତିର ଅଶେଷ ଯନ୍ତ୍ରଣା ନାୟିକାର ଦେହ ମନକୁ କରେ ଜୀର୍ଣ୍ଣ ବିବର୍ଣ୍ଣ । 'ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୟର ନଇ ।' ମନରେ ବ୍ୟାକୁଳତା, ଦେହ ନାହିଁ ନିଃଶ୍ୱାସରେ ପ୍ରଖରତା ସମୟର ସର୍ବଗ୍ରାସିତା ଭିତରେ ଜୀବନର ସ୍ୱପ୍ନ ହଜିପଡ଼େ । ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ । କବିର ପ୍ରେମିକା ହଜିଯାଏ ଅତୀତର କେଉଁ ଏକ ବିସ୍ମୃତ ସଂଧ୍ୟାରେ । ନାୟକର ମନେ ବି ପଡ଼େନା କେବେ କେଉଁଠି ନାୟିକା ସହିତ ତାର ସାକ୍ଷାତ ଘଟିଥିଲା— ବର୍ତ୍ତମାନ/କଟକ ବା ଅତୀତ/ଜନ୍ମଭୂମି ରେ ସେ ପାଇଥିଲା କାବ୍ୟ ନାୟିକାର ସଂଧାନ । ଏଇ ବିସ୍ମୃତି କାବ୍ୟ ପୁରୁଷର ଦେହ ଆତ୍ମାର ସଫଳ ସଂଯୋଜନ ପାଇଁ ବିରାଟ ପ୍ରଶ୍ନବାଚୀ ।

ମଣିଷ ପାଇଁ ଆଜି ଯାହା ସତ୍ୟ, କାଲି ତାହା ମିଥ୍ୟା । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ— ଏଇ ତ୍ରିକାଳର ଦ୍ୱନ୍ଦ୍ୱ ଭିତରେ ଗତିଶୀଳ ମଣିଷର ମନ ପାଇଁ କିଛି ବି ନିଶ୍ଚିତ ନୁହେଁ, ସତ୍ୟ ନୁହେଁ, ସ୍ଥିର ନୁହେଁ । ତା' ଜୀବନର ସର୍ବଶ୍ରେଷ୍ଠ ବିଶ୍ୱାସ ପ୍ରେମ ଚିରନ୍ତନ ପ୍ରତିଶ୍ରୁତି ଦେଇପାରେନା କି ଦୀର୍ଘ ପାରେନା । କାଳର

ଉଦଗ୍ର ପ୍ରେମ ଧୂଆଁ ହୋଇ ମିଶିଯାଏ ଅନନ୍ତ ଶୂନ୍ୟରେ । ଯେତେବେଳେ ନାୟିକା ହଜିଯାଏ ଅଜ୍ଞାତର ଇଥରସ୍ତରରେ ସେତେବେଳେ ନିଃସୀମ ଶୂନ୍ୟତା ଭିତରେ ନାୟକ ଏକ ଯନ୍ତ୍ରଣା ଜର୍ଜରିତ ପୃଥିବୀ ବକ୍ଷରେ ସାଜେ ଜୀବନ ଶିଳ୍ପୀ ।

ଏକ ପକ୍ଷରେ କବି ଯେତିକି ଭାବପ୍ରବଣ, ରୋମାଣ୍ଟିକ ପ୍ରେମଧର୍ମୀ, ଅନ୍ୟପକ୍ଷରେ ଏକ ଅବଚେତନ ଷଡ଼ଯନ୍ତ୍ର ଶୀତଳ ପ୍ରେମର ଗହ୍ୱରରେ । ଚମ୍ପାଫୁଲର ମହକରେ କୃଚ୍ଛ୍ରଜର ମାୟାଜାଲ ଯୋଗୀକୁ ମଧ୍ୟ ସଂସାର ଜାଲରେ ଛନ୍ଦିଦିଏ । ମାଂସ ଫୁଲହୋଇ ଫୁଟେ, ମନ ରୋମାଞ୍ଚରେ ଶୋଲପତ୍ରେ ପୁଣି ଗୋବର ଗଣେଶ ହୋଇ ରହେ । ଏକ ଖୁବ୍ ଅସହାୟ ଅଜ୍ଞବତ୍ବୋଧ ଭିତରେ ପ୍ରେମର ଷଡ଼ଯନ୍ତ୍ର କ୍ଳୀବ ରୂପରେ ସମଗ୍ରକୁ ପରିବ୍ୟାପ୍ତ । ଦେହାଶ୍ରିତ ପ୍ରେମ ପରିବର୍ତ୍ତେ ଦେହଜ କାମନାର ବିକୃତିହିଁ ପ୍ରେମକୁ କରିଛି ସଂକୋଚିତ ।

ଦେହର କ୍ଳାନ୍ତି, ମନର ଉତ୍ତେଜନା, ଦୈହିକ କ୍ଷୁଧା, ନ ପାଇବାର ଦୁଃଖ ଓ କୋହର ପ୍ରଶମନ ପାଇଁ ଏଥିରେ କୌଣସି ନିର୍ଦ୍ଦିଷ୍ଟ ବନ୍ଦୋବସ୍ତ ଇଙ୍ଗିତ ନାହିଁ । ସ୍ୱପ୍ନକୁ କ୍ରିୟାଶୀଳ କରିବା କଥା ଭାବୁ ଭାବୁ ସମୟ ତାକୁ ଠକି ଦେଉଛି । କବି କାଳ ସଚେତନ, ଜୀବନ ସଚେତନ ନୁହନ୍ତି ।

ଯେଉଁ ନାରୀକୁ କବି 'ତୁମେ' ବୋଲି ସମ୍ବୋଧନ କରିଛନ୍ତି ସେ କୌଣସି ନିର୍ଦ୍ଦିଷ୍ଟ ନାରୀ ହୋଇପାରେ, ପୁଣି ତାର କୌଣସି ସତ୍ତା ନଥାଇ ବି ପାରେ । ଗୁରୁପ୍ରସାଦଙ୍କ ଆଧୁନିକ ମାନସର ଅନ୍ୟତମ ପ୍ରକାଶ ତାଙ୍କର ଶବ୍ଦ ପ୍ରୟୋଗ ସ୍ତରରେ ପଲ୍ଲବିତ । ଆକାଶର ଇସ୍ପାତ ଦେହ, ଆମର ମୁହଁ ରଚିତ ଚନ୍ଦ୍ରାଧାର ମୂଳରେ, ଐରାବତ ଆଘାତ ହାଣି ମନକୁ ହୋହଲାଇ ଦିଏ । ସୃଷ୍ଟି କରେ ନୂତନ ଜୀବନାନୁଭୂତି । କେତେକ ଶବ୍ଦର ବାରମ୍ବାର ଉଚ୍ଚାରଣ

କବିଙ୍କ ବ୍ୟକ୍ତିତ୍ୱ ଓ ଶବଶିଳ୍ପର ସହାୟକ ଭାବରେ ଗୃହୀତ। ସଚି ରାଉତରାୟ ଓ ବୈକୁଣ୍ଠ ପଟ୍ଟନାୟକଙ୍କୁ ସେ ଅସ୍ୱୀକାର କରି ପାରିନାହାନ୍ତି ସତ, କିନ୍ତୁ ଆଧୁନିକ କବିତା ରଚନା କ୍ଷେତ୍ରରେ କରି ନୂତନ ଶୈଳୀ ଓ ଭାବର ପ୍ରବର୍ତ୍ତକ।

ଗୁରୁପ୍ରସାଦଙ୍କ କବିତାର ବିଶେଷ ଆକର୍ଷଣ ଅନୁଭୂତିର ଚିତ୍ରକଳ୍ପକୁ କଣ୍ଠସ୍ୱରର ସହିତ ପ୍ରସାରିତ କରିବା ପାଇଁ ତାଙ୍କର ଆନ୍ତରିକ ଉଦ୍ୟମ।

— ରେଖା ମହାନ୍ତି



## ସୁନାର ଝରଣା

ହସି ହସି ଝରିଗଲା ସିମେଣ୍ଟର ତଟାଣ ଉପରେ
ସୁନାର ଝରଣା;
ସେତେବେଳେ ଏ ଗଳିରେ ଘରଥିଲା ପୁଣି ଥିଲେ ଲୋକେ
ପୁଣି ଥିଲା ମୋ ଦେହରେ ପଉଷର ପାଳିତ ମୂର୍ଚ୍ଛନା।
ପଉଷର କୁହୁଡ଼ିପରି ଛାଇ ହଜେ ଜହ୍ନ ଜଳିଯାଏ
ଝର୍କାପରି ଠେଲି ଠେଲି ଧୂଳି ଯାଏ ସମସ୍ତ ବି ଯାଏ
ଜୀବନରୁ ବର୍ଷଟିଏ ଖସିଯାଏ ଆସ୍ତେ ଖସିଯାଏ।
ନିଦରେ ମୁଁ ଶୋଇଥିଲି କ୍ଲାନ୍ତ ଦେହ କ୍ଲାନ୍ତ ଥିଲା ମନ
ଆଖିରେ ମୋ ସ୍ମୃତି ଥିଲା କାମିଜର ରଫୁରେ ରଫୁରେ
ଏ ଦେହରେ ସ୍ୱପ୍ନ ଥିଲା, ଥିଲା ମୋର ଜୀବନର ଗାନ।
ଏତେବେଳେ ଅକସ୍ମାତ୍ ଜହ୍ନ-ସଢ଼ ଉଠେ
ଏତେବେଳେ କୁହୁଡ଼ିରେ ଝଲମଲି ଥୋପି ଥୋପି'ଡାଳ

ଏତେବେଳେ ହଠାତ୍ ମୁଁ ଜାଣିପାରେ ଯେବ
ଦେହରେ ମୋ ଛୁଇଁଗଲା ଛପି ଛପି ଗୋପନ ଦକ୍ଷିଣା ।
ପଡ଼ଷର କୁହୁଡ଼ିରେ ଜହ୍ନ ହଜେ ତାରା ହଜଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା,
ତା ଅଖିର ତୋଳା ତଳେ ଡେଇଁଉଠେ ମୋ ମୁହଁର ଗ୍ଳାଇ ।

ମୁଁ ଗୁନ୍ଥିଛି ତା' ଆଖିକୁ ଅପଲକ ପୁଣି ଭାଷାହୀନ
ତା ଓଠରେ ଯେତେ ଫୁଲ ଦଳ ହୋଇ ରଙ୍ଗ ଗୋଳଦିଏ
ମୁଁ ଭାବୁଛି ଖୋଜମିବ ସେଠି ମୋର ପ୍ରାଣର ସଂଧାନ ।
ତା ପାଦରେ ଛନ୍ଦ ଅଛି, ତା ଆଖିରେ ଝିକମିକି ତାରା

ତା ଦେହରେ ଯେତେ ତେଜ ଜହ୍ନ ଆଜି ତାରା ଆଲୁଅର
ତା ବେଣୀରେ ଲୀଳାୟିତ ସ୍ୱପ୍ନ ଯେତେ ଉଆଁସ ରାତିର
ତା ଭିତରେ ଆଶା ମୋର ରହେ ଅବା ଗୋପ୍ୟ ନିରାକାର ।

ଝରଣାର ବେଣୀ ଝୁଲେ ଝରଣାର ଶାଢ଼ୀ ତେଜ ଖେଳେ
ପଡ଼ଷର କୁହୁଡ଼ିରେ ଆଖିରେ ମୋ' ଜ୍ୟୋତି ଯେବେ ନଭେ
ଝରଣାର କୂଳେ କୂଳେ ଆସୁହତ ମୁଁ ଏକ ପଥିକ
ପାଣି ଖୋଜେ ସ୍ୱପ୍ନ ଖୋଜେ, ଖୋଜେ ମୋର ପାପର ଆଲୋକ ।

ସୁନାର ଝରଣା ଯାଏ ଝରି ଝରି ସିମେଣ୍ଟର ଚଟାଣ ଉପରେ
ପଡ଼ଷର କୁହୁଡ଼ିରେ ଝରେ ଝରେ ଦୁନିଆର
ଆସୁ ମୋର ପଥ ଝଡ଼ିପଡ଼େ
ମୁଁ ତାକୁ ପାଇଚି ଭଲ ବ୍ୟର୍ଥତା ମୋ ପୁଂଜୀଭୂତ କରି
ଜୀର୍ଣ୍ଣ ମୋର ଅବଶେଷ ଜାଳି ପୋଡ଼ି ପଡ଼ଷର ମ୍ଳାନ ଗୋଧୂଳିରେ ।

କବିତାଟିର ନାଁ ପଢ଼ିବା ମାତ୍ରେ ପାଠକର ମନରେ ପ୍ରଶ୍ନ ଉଠେ, "ଝରଣା ସୁନାର ହବ କେମିତି ?" ପ୍ରଥମ ଦୁ'ଧାଡ଼ି ପଢ଼ିବା ପରେ ଏଥିରେ ଯେ ଝରଣା ବିଷୟରେ କୁହାଯାଉନି, ତା' ସ୍ପଷ୍ଟ ହେଇଯାଏ । କାରଣ ଝରଣା ନିର୍ଜୀବ । ହସିବାର ଶକ୍ତି ତାର ନାହିଁ । ପୁଣି ଝରଣା ଝରେ ପ୍ରକୃତି-କୋଳରେ, ବଣ-ପାହାଡ଼ରେ । ମାତ୍ର ଏ କବିତାରେ ଝରଣା 'ସିମେଣ୍ଟର ଚଟାଣ ଉପରେ' ଝରିଯିବା କଥା କୁହାଯାଇଛି । 'ସିମେଣ୍ଟର ଚଟାଣ' ଏକ କୃତ୍ରିମ ପରିବେଶର ସୂଚନା ଦିଏ ।

ଏତିକିରୁ 'ସୁନାର ଝରଣା'ର ପ୍ରକୃତ ଅର୍ଥ କଣ, ପାଠକ ଠିକ୍‌ଭାବେ ବୁଝି ପାରେନି । ସେ ଯେତେବେଳେ ୨୬ତମ ଧାଡ଼ି "ଝରଣାର ବେଣୀ ଝୁଲେ ଝରଣାର ଶାଢ଼ୀ ଡେଉଁ ଖେଳେ" ପାଖରେ ପହଞ୍ଚେ, ସେତେବେଳେ 'ସୁନାର ଝରଣା' ଯେ ଜଣେ ସୁନ୍ଦରୀ ତଥା ରୂପସୀ ଯୁବତୀର ପ୍ରତୀକ, ଏକଥା ଆଉ ଅଛପା ରହେନି । କାରଣ ବେଣୀ ଓ ଶାଢ଼ୀରୁ ଝରଣାର ଅର୍ଥ ନାରୀ ବୋଲି ସୂଚନା ମିଳେ । ତା'ପରେ 'ଝରଣା'ର ବିଶେଷଣ 'ସୁନାର' । ସୁନା ଦେଖିବାକୁ ସୁନ୍ଦର ଓ ସମସ୍ତଙ୍କର ପ୍ରିୟ। ସମସ୍ତେ ତାକୁ ପାଇବାକୁ ଇଚ୍ଛା କରନ୍ତି । ସେମିତି ନାରୀ ଯୌବନରେ ଖୁବ୍ ସୁନ୍ଦରୀ ଦିଶେ ଓ ସମସ୍ତଙ୍କର ପ୍ରିୟ ହେଇ ଉଠେ । ତେଣୁ କବିତାର କାବ୍ୟ-ନାୟିକା ଜଣେ ରୂପସୀ ଯୁବତୀ । କାବ୍ୟ-ପୁରୁଷ ତାକୁ ଲାଭ କରିବାକୁ ଚେଷ୍ଟା କରିବା ସ୍ୱାଭାବିକ । କିନ୍ତୁ ସୁନା ଲାଭ କରିବାଭଳି ଭାଗ୍ୟ ସମସ୍ତଙ୍କର ନଥାଏ । କାବ୍ୟ-ପୁରୁଷ ବି ତା'ର ପ୍ରେୟସୀକି ପାଇନି । ପ୍ରେମରେ ସେ ବିଫଳ ହେଇଛି । କବିତାର ଶେଷ ବାକ୍ୟ ବା ୩୩-୩୪ତମ ଧାଡ଼ି 'ମୁଁ ତାକୁ ପାଇଚି ଭଲ ବ୍ୟର୍ଥତା ମୋ' ପୁଞ୍ଜିଭୂତ କରି × ×"ରେ ଏହା ସ୍ପଷ୍ଟ ପରିସ୍ଫୁଟ ।

କବିତାର ପ୍ରଥମ ସ୍ତବକରେ ବ୍ୟବହୃତ ସମସ୍ତ କ୍ରିୟା ଅତୀତ କାଳର । ଯଥା— ଝରିଗଲେ, ଥିଲି ଓ ଥିଲେ । ଏହା ସହିତ ତୃତୀୟ ଧାଡ଼ିର "ସେତେବେଳେ ଏଗଛରେ ଖଗଥିଲା × × ×" ର 'ସେତେବେଳେ' ସୂଚେଇ ଦିଏ ଯେ 'ସୁନାର ଝରଣା'ର ଝରିବା କାହିଁକି ଅତୀତର ଏକ ଘଟଣା ଓ ସ୍ମୃତିର ସାମଗ୍ରୀ । ଏହି ଘଟଣାର ବାଙ୍ମୟ ପୁନରାବୃତ୍ତି (୧ମ-୨ୟ, ୧୬-୧୭ତମ ଓ ୩୦ତମ ଧାଡ଼ି ଦେଖନ୍ତୁ) କାବ୍ୟ-ପୁରୁଷ ପାଖରେ ସେହି ସ୍ମୃତିର ନିବିଡ଼ତା କେତେ, ତା'ର ପରିଚୟ ଦିଏ । କାବ୍ୟ-ପୁରୁଷର ସେହି ପ୍ରିୟ ସ୍ମୃତିର ରୋମନ୍ଥନ ହିଁ ଏହି କବିତାର ବିଷୟବସ୍ତୁ ।

ଝରଣା କୁଳୁକୁଳୁ ନାଦ କରି ଅଙ୍କେଇ ବଙ୍କେଇ ବହିଯାଏ । ସେମିତି ନାରୀମାନଙ୍କ ଗତି ଦୋଳାୟିତ ଓ ସେମାନେ ଚାଲିଲାବେଳେ ପାଦର ଅଳଙ୍କାର ରୁଣୁଝୁଣୁ ଶବ୍ଦ କରେ । ତେଣୁ ଏଠି 'ସୁନାର ଝରଣା ଝରିଯିବା'ର ଅର୍ଥ ରୂପସୀ ଜଣକ ଲୀଳାୟିତ ଗତିରେ ରୁଣୁଝୁଣୁ ଧ୍ୱନି କରି ଚାଲିଯିବା । ସେ ଖାଲି ସେମିତି ଚାଲିଯାଇନି; 'ହସି ହସି' ଯାଇଛି । ଏଇ 'ହସିବା' ଭିତରେ କାବ୍ୟ-ପୁରୁଷ ପ୍ରତି ନାୟିକାର ପ୍ରେମର ଇସାରା ନିହିତ । ତା'ପରେ

"ସେତେବେଳେ ଏ ଗଛରେ ଖଗଥିଲା ପୁଣି ଥିଲେ ଲୋକେ
ପୁଣି ଥିଲି ମୋ ଦେହରେ ପଉଷର ପଳାଶ ମଞ୍ଜରୀ"

ଖଗ ସୂର୍ଯ୍ୟଙ୍କର ଉପସ୍ଥିତି ଓ ଦିନ ଆଲୋକ ସୂଚିତ କରେ । ସୂର୍ଯ୍ୟ ସ୍ଫୂର୍ତ୍ତି, ଶକ୍ତି ଓ ଉଦ୍ଦାମତାର ପ୍ରତୀକ । ଦିନ ମଧ୍ୟ ତାହା ହିଁ ସୂଚାଏ । ତେଣୁ 'ଖଗ'ର ଅର୍ଥ ସ୍ଫୂର୍ତ୍ତି, ଉଦ୍ଦାମତା ବା ଜୀବନ ( Liveliness ) ଓ 'ଲୋକେ'ର ଅର୍ଥ 'ପ୍ରାଣବନ୍ତ ମଣିଷ' । ଅର୍ଥାତ୍ ସେଇ ରୂପସୀ

ଯୁବଙ୍କର "ଛନ୍ଦାୟିତ ଗତିରେ କାବ୍ୟ-ପୁରୁଷର ଆଖପାଖରେ ରହୁଥିବା ଲୋକଙ୍କ ମନରେ ଆଲୋଡ଼ନ ସୃଷ୍ଟି ହେଉଥିଲା । ସ୍ୱୟଂ କାବ୍ୟ-ପୁରୁଷ ମନରେ ବ ସେଇ ଛନ୍ଦର ପ୍ରତିଧ୍ୱନି ଶୁଭୁଥିଲା । ତା'ମନରେ ମୂର୍ଚ୍ଛନା ସୃଷ୍ଟି ହେଉଥିଲା । କିନ୍ତୁ ସେ ମୂର୍ଚ୍ଛନା ଫଗୁଣର ଉଦ୍ଦାମ ମୂର୍ଚ୍ଛନା ନୁହେଁ, 'ପଉଷର ପଳିତ ମୂର୍ଚ୍ଛନା' । ପଉଷ ମାସରେ ପୃଥିବୀ ପାଣ୍ଡୁର ବର୍ଣ୍ଣ ଧାରଣ କରେ । 'ପଉଷ' ସମ୍ପୃକ୍ତ 'ପଳିତ' ଓ 'ମୂର୍ଚ୍ଛନା'ର ପ୍ରୟୋଗରୁ ଧରିନିଆଯାଇ ପାରେ ଯେ 'ସୁନାର ଝରଣା'ର 'ଝରିଯିବା' ଘଟଣାଟି ଘଟିଲା ବେଳେ କାବ୍ୟ ନାୟକ ଯୌବନ ଓ ପ୍ରୌଢ଼ତ୍ୱର ସୀମାରେଖାରେ ଅବସ୍ଥିତ ହୋଇସାରିଥିଲା ।

'ପଉଷର କୁହୁଡ଼ିରେ'ରୁ କବିତାର ଦ୍ୱିତୀୟ ସ୍ତବକର ଆରମ୍ଭ । ପଉଷ ଶୀତଋତୁର ଅନ୍ତର୍ଗତ । ଋତୁ ଚକ୍ରରେ ଶୀତପରେ ଆସେ ବସନ୍ତ । କିନ୍ତୁ ଆମର କାବ୍ୟ ପୁରୁଷ ଭାଗ୍ୟରେ ତା' ଜୁଟିନି । ଅନ୍ୟ ଭାବରେ କହିଲେ, ନିଜର ଈପ୍ସିତ ବସ୍ତୁକୁ ସେ ପାଇନି । ତା'ର ସାରା ଜୀବନ ପଉଷର ପାଣ୍ଡୁର କୁହୁଡ଼ି ଭିତରେ କଟିଛି । ଆଗେ 'ଏ ଗଳିରେ ଖରା' ଥିଲାବେଳେ ସେ 'ସୁନାର ଝରଣା'କୁ ଦେଖିପାରୁଥିଲା । କିନ୍ତୁ 'ପଉଷର କୁହୁଡ଼ି' 'ଖରା' ଓ 'ଜହ୍ନ'କୁ ତା' ଆଖିରୁ ଅନ୍ତର କରିଦେଲା । ଏଠି 'ଖରା' ଓ 'ଜହ୍ନ' ବି 'ସୁନାର ଝରଣା' ପରି କାବ୍ୟ-ନାୟିକା ପାଇଁ ବ୍ୟବହୃତ । ୨୨-୨୩ତମ ଧାଡ଼ି × × × × ତା' ଅଙ୍ଗରେ ଝିକମିକ ଖରା ତା ଦେହରେ ଯେତେ ତେଜ "ଜହ୍ନ ଆଜ ଖରା ଆଲୁଅ"ରୁ ଏକଥା ସ୍ପଷ୍ଟ ବୁଝାପଡ଼େ । କୁହୁଡ଼ି ସାଧାରଣତଃ ଦୁନିଆର ସବୁକିଛି ଉପରେ ଏକ ପର୍ଦ୍ଦା ପକେଇ ଆଖିର ଅନ୍ତରାଳକୁ ଟାଣିନିଏ । "ପଉଷର କୁହୁଡ଼ି" ଏକ ବାଧାର ପ୍ରତୀକ

ଯାହାକି କାବ୍ୟ-ନାୟକକୁ କାବ୍ୟ-ପୁରୁଷଠୁ ଦୂରେଇ ନେଇ ମିଳନରେ ଅନ୍ତରାୟ ସୃଷ୍ଟି କରିଛି । କବିତାର ଷଷ୍ଠ ଅଂଶରେ 'ପଉଷ' ଓ 'କୁହୁଡ଼' ଶବ୍ଦଦ୍ୱୟର ବାରମ୍ବାର ( 'ପଉଷ' ଓ 'କୁହୁଡ଼' ଏକତ୍ର ୪ଥର, କେବଳ 'ପଉଷ' ଦ'ଥର ଓ କେବଳ 'କୁହୁଡ଼' ଥରେ ) ପ୍ରୟୋଗ କରାଯାଇଛି । ଏଥିରୁ ଉକ୍ତ ବାଧା କାବ୍ୟ ପୁରୁଷ ହୃଦୟରେ କପରି ଗଭୀର ରେଖାପାତ କରିଛି, ତା' ସହଜରେ ଅନୁମେୟ ।

ପ୍ରେୟସୀର ଦେହ ଦୂରେଇ ଗଲେ ବି ତା'ର ସ୍ମୃତି କାବ୍ୟ-ନାୟକର ହୃଦୟକୁ ଆବୋରି ବସିଛି । ସେହି ସ୍ମୃତିକ ସମ୍ବଳ କରି ଜୀବନ କାଟିବାକୁ ସେ ସ୍ଥିର କରିଛି । ସମୟର ଗତି ସଙ୍ଗେ ତାଳ ଦେଇ ପବନଟିଏ ନିଟୋଳ ରୂପ ରୂପ ଝଡ଼ିଗଲା ପରି ତା'ର ଆୟୁଷରୁ ଆସ୍ତେ କରି ଖସି ପଡ଼ୁଛି ବର୍ଷଟିଏ । ଦେହ ଉପରେ ଜମି ଆସିଛି ପ୍ରୌଢ଼ତ୍ୱର ଧୂଳି ।

ବାସ୍ତବ ଜଗତରେ ସୁନାର ଝରଣା, ତାରା ଓ ଜହ୍ନ, ଏ ସବୁ ଦୁର୍ଲଭ । ତା' ସତ୍ତ୍ୱେ ନାୟକ ସେସବୁ ହାସଲ କରିବାକୁ ଆପ୍ରାଣ ଚେଷ୍ଟା କରିଛି । ହେଲେ ସବୁ ଅକାରଣ । ନବମ ଧାଡ଼ିର 'ଜାମିକର ରଙ୍ଗର ରହୁରେ' ଉକ୍ତି ଭିତରେ ନାୟକର ଚେଷ୍ଟାର ନିଷ୍ଠା ତଥା ଐକାନ୍ତିକତା ସହିତ ସ୍ୱପ୍ନର ବପର୍ଯ୍ୟୟ ସୂଚିତ । ବିଫଳ ମନୋରଥ ହୋଇ ସେ ଦେହ ଓ ମନରେ ଭଗ୍ନ କ୍ଳାନ୍ତ ନେଇ ଶୋଇ ପଡ଼ିଛି । ବ୍ୟର୍ଥତା ଓ ବିଫଳତା ଜନିତ ଦୁଃଖ ସବୁକୁ ଭୁଲିବାର ଉଦ୍ୟମ କରିଛି । କିନ୍ତୁ "ସ୍ମୃତି ସବୁ କେବେ ନୁହେଁ ଯିଙ୍ଗିବାର" । ବିଫଳତା ଓ ଦୁଃଖଭରା ସ୍ମୃତିରେ ବି ଗୋଟେ ସ୍ୱତନ୍ତ୍ର ପ୍ରକାରର ଆନନ୍ଦ ରହିଥାଏ । ଏଇଥିପାଇଁ ଇମର୍ସନ 'Delicious torment'ର ବ୍ୟବହାର କରିଚନ୍ତି ।

ସମସ୍ତ ବ୍ୟର୍ଥତା ମଧ୍ୟରେ, ନୈରାଶ୍ୟ ମଧ୍ୟରେ ମଣିଷ ଟିକେ ଆଶାକୁ ନେଇ ବଂଚେ । ପ୍ରେମରେ ବିଫଳ ହେଲା ପରେ ବି କାବ୍ୟ-ପୁରୁଷର ମନ ଏକଦମ ନିରାଶ ହୋଇଯାଇନି । ତା' ମନରେ ଏକ ସାମୟିକ ଆଶା ଝଙ୍କି ମାରିଚି, ସବୁ ବାଧା ବଂଧନକୁ ଅତିକ୍ରମ କରି ତା'ର ପ୍ରେମିକା ଅକସ୍ମାତ୍ ରୁପାଥାଳି-ଜହ୍ନ ଓ ଥୋପି ଥୋପି ତାରାପରି ଆଗରେ ଆସି ଉଭା ହେଇ ଯାଆନ୍ତା କି ! ସେ ହଠାତ୍ ଗୋପନ ଦକ୍ଷିଣାର ସ୍ପର୍ଶ ଅନୁଭବ କରନ୍ତା କି ! କିନ୍ତୁ

"ଉଜଷର କୁହୁଡ଼ିରେ ଜହ୍ନ ହଜେ ତାରା ହଜିଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା ।"

ଏ ବାକ୍ୟଦ୍ୱୟ ଆପାତତଃ ପରସ୍ପର ବିରୋଧୀ ପରି ଲାଗେ । କାରଣ ପ୍ରଥମେ ନାୟିକାର ଦୂରେଇ ଯିବା କଥା ( 'ଜହ୍ନ ହଜେ ତାରା ହଜି ଯାଏ' ) କହି ପୁଣି ସେ ଛନ୍ଦାୟିତ ଗୀତରେ ଗୁଞ୍ଜିଯାଏ ( 'ହସି ହସି ଝରିଯାଏ × × × ସୁନାର ଝରଣା' ) କହିବା ଅସଂଗତ ମନେ ହୁଏ । ପ୍ରକୃତରେ କଥା ହେଉଚି ଯେ ନାୟିକାର ଦେହ ନାୟକର ଆଖିର ପରିଧି ଭିତରୁ ଦୂରେଇ ଗଲେ ବି ତା'ର ସ୍ମୃତି ମନଭିତରୁ ହଜି ଯାଇନି । ଏଠି ସ୍ମରଣୀୟ ଯେ ୧୬-୧୭ତମ ଧାଡ଼ିର ଭାବ ୧ମ-୨ୟ ଧାଡ଼ିଠୁ ଅଲଗା । ୧ମ-୨ୟ ଧାଡ଼ିରେ ପ୍ରକୃତ ନାୟିକା ବିଷୟରେ କୁହାଯାଇଥିଲା ବେଳେ ୧୬-୧୭ତମ ଧାଡ଼ିରେ ତା'ର ସ୍ମୃତି ବିଷୟରେ କୁହାଯାଇଚି । ୩୦ତମ ଧାଡ଼ିଟି ବି ନାୟିକାର ସ୍ମୃତି ବିଷୟକ ଅର୍ଥ ପ୍ରକାଶ କରେ । ୧ମ ୨ୟ ଧାଡ଼ିରେ ଅତୀତ କାଳର କ୍ରିୟା ( ଝରିଗଲା ) ପ୍ରୟୋଗ କରାଯାଇ ୧୬ ୧୭ତମ ଓ ୩୦ତମ ଧାଡ଼ିରେ ବର୍ତ୍ତମାନ କାଳର

କ୍ରିୟା ( ଯଥାକ୍ରମେ 'ଝରିଯାଏ' ଓ 'ଯାଏ ଝରି ଝରି' ) ର ବ୍ୟବହାର ଆନ୍ତ ସୂକ୍ଷ୍ମ ବଳିଷ୍ଠ କରେ ।

ତା'ପରେ କାବ୍ୟ ପୁରୁଷ କଳ୍ପନାରେ ଦେଖିଛି ଯେ ନାୟିକା ପାଦରେ ଛନ୍ଦ, ଆଖିରେ ଝିକମିକ ତାରା, ଦେହରେ ଜହ୍ନ ଓ ତାରା ଆଲୁଅର ଢେଉ ଓ ବେଣୀରେ ହଂସ ଗୀତର ଅନେକ ସ୍ୱପ୍ନ । ସେ ନର୍ତ୍ତକ ହୋଇ ନାୟିକାର ଆଖିକି ଚୁମ୍ବିଛି । ସେଥିରେ ପ୍ରତିଫଳିତ ହୋଇଛି ତା'ର ପ୍ରତିବିମ୍ବ । ଏଥିରୁ ନାୟକାଠାରେ ନାୟକର ଆତ୍ମା ବା ହୃଦୟ ସମର୍ପଣ ସୂଚିତ, କିନ୍ତୁ ଏ ସମର୍ପଣ ଗୋପ୍ୟ; କାହାରକୁ ଏକଥା ଜଣା ନାହିଁ । ଏ ସମର୍ପଣ ସଂପୂର୍ଣ୍ଣ ନିସ୍ୱାର୍ଥପର ଓ ଉଦ୍ଦେଶ୍ୟବିହୀନ ମଧ୍ୟ । ତେଣୁ 'ତା' ଭିତରେ ଆତ୍ମା ମୋର' ନିରାକାର ବା ନିର୍ଗୁଣ ହୋଇ ରହିଛି ବୋଲି କୁହାଯାଇଛି ।

କାବ୍ୟ ନାୟକର ଆଖିରୁ ଜ୍ୟୋତି ହଜିଗଲା ସମୟରେ ବି ତା' ମନରେ ନାୟିକାର ସ୍ମୃତି ଆଗପରି ଜୀବନ୍ତ ଓ ଉଜ୍ଜ୍ୱଳ ହୋଇ ରହିଛି । ଏବେ ସେ ଜଣେ ଆଘୁହତ ପଥିକ; କ୍ଲାନ୍ତ, ତୃଷାର୍ତ୍ତ ଓ ଦିଗ୍‌ଭ୍ରାନ୍ତ । ଝରଣାର କୂଳରେ ଅର୍ଥାତ୍ ନାୟିକାର ସ୍ମୃତିକୁ ଆବୋରି ବସି ସେ କ୍ଲାନ୍ତି ଓ ତୃଷା ନିବାରଣ ପାଇଁ ପାଣି ଖୋଜୁଛି; ଅନ୍ଧାରରୁ ମୁକ୍ତି ପାଇବାପାଇଁ ସ୍ୱପ୍ନ ଓ ଦୀପର ଆଲୋକ ଖୋଜୁଛି । ଏଠି ପାଣି, ସ୍ୱପ୍ନ ଓ ଦୀପର ଆଲୋକ ସବୁ ନାୟିକାର ପ୍ରତୀକରୂପେ ବ୍ୟବହୃତ ।

କବିତାର ଶେଷ ସ୍ତବକରେ ରହିଛି କାବ୍ୟ-ପୁରୁଷର ହତାଶାଭରା ଦୀର୍ଘଶ୍ୱାସ । ଆପୁଷ ତା'ର ପର୍ଯ୍ୟଟନା ହେଲାଣି । କିନ୍ତୁ ପ୍ରେମିକାର ସ୍ମୃତି ତା'ର ହୃଦୟକୁ ଆପ୍ଳୁତ କରିଛି ।

ଶେଷ ଦ' ଧାଡ଼ି ( ୩୩-୩୪ତମ ଧାଡ଼ି )ରେ ନାୟିକାପ୍ରତି ନାୟକର ଅନୁରାଗର ଐକାନ୍ତିକତା ଓ ଏକନିଷ୍ଠତା ପରିସ୍ଫୁଟ । ପ୍ରେମରେ ଅସଫଳ ହେଲେ ବି ସେଇ ବ୍ୟର୍ଥତାକୁ ସ୍ୱୀକାର କରିବାରେ ତା'ର କୁଣ୍ଠା ନାହିଁ, ଦ୍ୱିଧା ନାହିଁ । ବରଂ ନିଜର ଜୀର୍ଣ୍ଣ ତନୁକୁ ପ୍ରଜ୍ୱଳିତ କରି ଜାଳି ଉତ୍ତର ବସନ୍ତରେ ସେ ପ୍ରେମର ଜୟଗାନ କରି ଗାଇଛି —

"ମୁଁ ତାକୁ ପାଇବି ଭଲ ବ୍ୟର୍ଥତା ମୋ ପୁଞ୍ଜି ଭୂତ କରି
ଜୀର୍ଣ୍ଣ ମୋର ଅବଶେଷ ଜାଳପ୍ରୋଜ୍ଜ୍ୱଳ ପଞ୍ଜରର ମ୍ଳାନ ଗୋଧୂଳିରେ ।"

— ୩ —

ପ୍ରାୟ ସବୁ କବିତାରେ ଗୁରୁପ୍ରସାଦଙ୍କ କାବ୍ୟ-ପୁରୁଷମାନେ ପ୍ରେମରେ ଅସଫଳ ଓ ବ୍ୟର୍ଥ । କିନ୍ତୁ ଆଲୋଚ୍ୟ କବିତାରେ ପ୍ରେମିକା ଓ ପ୍ରେମପ୍ରତି କାବ୍ୟପୁରୁଷଙ୍କର ଯୋଉ ଏକନିଷ୍ଠତା ଚିତ୍ରିତ, ତା' ଅନନ୍ୟ ବୋଇଲେ ।

ପଞ୍ଚାନନ ମହାନ୍ତି

## ପ୍ରିୟ କାଦମ୍ବରୀ

ସଜଷ କୁହୁଡ଼ି ଆସେ ସ୍ୱପ୍ନ ପରି ଘାରି ଧାନ କ୍ଷେତ
ବନ୍ଦନ ବାଲିର ତଳେ ଜହ୍ନ ଯେବେ କ୍ଳାନ୍ତ ହୋଇ ନଏଁ
ଗହନ ରାତର ଆୟୁ କ୍ରମେ କ୍ରମେ କ୍ଷୟ ହୋଇ ଆସେ
ଯେତେବେଳେ ମଣି ଜଠା ଶେଷଥର କରୁ ଲେଉଟାଣି ।

ସେତେବେଳେ କେତେଥର ତୁମର ମୁଁ ପାଇଚି ବା ଦେଖା
ବସନ୍ତ ନଈର ତୁଠେ ଖୋଲି ବେଣୀ ଫିଟିଗଲାବେଳେ
ତୁମରି ଅସ୍ପୃଷ୍ଟ ଗୁଳ୍ମ ତୁଠେ ତୁଠେ ଛପିଗଲାବେଳେ
ସେତେବେଳେ ତୁମର ମୁଁ ଦେଖିଛି କି ସନ୍ଦେହର ଦେଖା ।

ସେ ହେଲା ପୁରୁଣା କଥା ଯେତେବେଳେ ଅଳ୍ପ ଥିଲା ଜ୍ଞାନ
ଆଉ ଥିଲା ଆକାଶରେ ଉଲ୍କାସ୍ରାବ ପଳାଶ ସନ୍ଧ୍ୟାର
ତୁମେ ପୁଣି ଯାଉଥିଲ କାଳତର ପାରି ହୋଇ ନଈ
ଅଜ ପିଇ ଅସମ୍ବୃତ ଅସଂଯତ ଭ୍ରାନ୍ତ ସନ୍ଧାନ ।

ଧାନ କ୍ଷେତ ନଇଁପଡ଼େ ଶୀତଋତୁ ବୁଢ଼ା ହୋଇ ଆସେ
ନଗ୍ନଟିଆ ଆକାଶରେ ଚାରି ନାସ୍ତି ପକ୍ଷୀର କାକଳି
ତୁମେ ଆଉ ଆସିନାହଁ ଏ ବାଟରେ ଥରେ ହେଲେ ଭୁଲି
ନଶ୍ୱର କାଳତରେ ଯେବେ ଯାଏ ପବନ ତୁମର ।

ତୁମେ ଆଜି ଅଛ ଆଉ ଯଦିବା ବା ସବୁ ମୂର୍ଚ୍ଛାହତ
ଏବେ ଗଛ ବଣ ଲତା ଆଉ ତେଉ ଆଜିକାଲିକର
ଆକାଶରେ ଜହ୍ନ ସୂର୍ଯ୍ୟ କ୍ଳାନ୍ତ ପୁଣି ଆବଶ୍ୟକହୀନ
ମୁଁ ତୁମର ଅନ୍ୱେଷଣରେ ସ୍ୱର୍ଣ୍ଣମୟ ସ୍ମୃତି ସନ୍ଧାନ ।

ତୁମେ ଯଦି ମିଛ କଥା, ତୁମେ ଯଦି କ୍ଳବ ଦୋକାନରେ
ଆଧୁନିକ ପ୍ରେମଗଳ୍ପ, ତୁମେ ଯଦି ରେଡ଼ିଓ ଖବର
ତୁମେ ଯଦି ଫିଲ୍ମ ଗୀତ ଥାର୍ଡ଼କ୍ଲାସ ରେଲ ଟିକଟ ଘର
ତୁମେ ଯଦି ବଜାରରେ ଲୁଗା ଚିନି ତେଲର କାରବାର · · ·

ମୁଁ ପଢ଼େ ଖବର ସବୁ, ବୁଢ଼ା ହୋଇଯାଏ ଶୀତଋତୁ
ରଙ୍ଗ ସବୁ ଖୁଣ୍ଟିଖାଣ୍ଟି ନେବେଠାରୁ ଛିଣ୍ଡା ଲୁଗା ଭଙ୍ଗା କୋଠାଘର

ଧାନ କ୍ଷେତ କାହିଁ କେଉଁ ସୁଦୂର ଟିକେ କେଉଁ ଅଜ୍ଞାତର
ଏଠି ମୋର ଘରପାଖେ ବାଲିଚର ଖାଲି ବାଲିଚର ।

ବାଲିରେ ମୁଁ ବୁଲିଯାଏ ସନ୍ଧ୍ୟାବେଳେ ଆଜକାଲି ବସନ୍ତ ସନ୍ଧ୍ୟାରେ
ଏହି ବାଲି ଚରେ ଚରେ ମୁଁ ଦେଖେ କେତେ ଲୋକ ନାଲି ନେଳି
କେତେ ରଙ୍ଗର
ନଗ୍ନଟିଆ କେତେବେଳେ ଦୀର୍ଘଶ୍ୱାସ ଜମି ଆସେ ଆଉ ଗୀତ ଗୁପି
ହୋଇ ଆସେ
ଏ ବାଲିରେ ସବୁ ସ୍ମୃତି ଦୁହିଁ ହୋଇ ହୁଏ ଏକାକାର ।

ତୁମେ ଆସ ଆଜ ଆସ ମିଲିଲୁଗା ପାଲଟି କେଉଁଠୁ
ବନାରସି ସିଲ୍‌କ ସିନ୍ଧ୍ରୁ ସେ ଦେହରେ ହଳଦୀ ଲଗାଇ
ଚମ୍ପାଫୁଲ ବେଣୀମୂଳେ, ଚନ୍ଦ ଲେଖି ସ୍ମୃତି ସେ ଭ୍ରୂକଡ଼େ
ତୁମେ ଆସ ଆଜ ଆସ ମାଟିରୁ ବା ଆକାଶ ଉପରୁ ।

ଯେତେ ବାଲି କୂତ ହୁଏ ଯେତେ ଦେହ ଜଳପୋଡ଼ ଯାଏ
ତୁମେ ଆସ ତା ଭିତରୁ ଯେତେ ଯାହା ଅଭଦ୍ର ଅଶ୍ଳୀଳ
ତୁମର ଓଠରୁ ଝରେ ଟୋପ ଟୋପା ଝରିଲି ଝରଇ
ତୁମେ ଆସ ସଜାଇ ବା ପୁଞ୍ଜିଭୂତ ଯେତେ ବ୍ୟଭିଚାର,

ଗାଡ଼ ଧୀରେ ଗାଡ଼ ହୁଏ ଦୂରର ଏ ଝାଉଁବଣଆଢ଼େ
ତେର ସବୁ ଶେଷ ଦିନେ ପ୍ରାଣପଣେ ଏ ବାଲିର ସ୍ମୃତି ଭଙ୍ଗୁ ବାଢ
ଏ ନଦର ବାଲିଚରର ଜନ୍ମ ନାହିଁ ତାର ନାହିଁ ଯେବେ
ମୁଁ ଆଣୁଛି ତୁମ ପାଖେ ମାଟିର ମୋ ଜନ୍ମାନ୍ତର ବାଢ ।

ତୁମେ ଆଜ ଏଠି ଅବା ବାରାଣସୀ କାଶୀ ନଗରରେ
କନରେ ତୁମର ପାନ, କମ୍ପା ଗୋଲ ନଗ୍ନଟିଆ ଆରସି ସାମ୍ନାରେ

ମୁଁ ହଁରେ ତୁମର ସ୍ନେହ, କମ୍ବା ଯେଉଁଠି ଚେତନାର ସୀମା ପାରି ହୋଇ
ନଖରେ ପଡ଼ିଛି ଶୋଇ ଜହ୍ନାହାଡ଼ କେଉଁ ଅସ୍ତ ବନସ୍ତ ଭିତରେ ।

ମୁଁ ତୁମକୁ ପ୍ରାରେ ଦେଖି ଆଜଠାରୁ କେତେ ବର୍ଷ ପରେ
ଅପଲ୍ତବ ସମସ୍ତଙ୍କ ଗୁଡ଼ିଏଡ଼ କୁଡ଼ କୁଡ଼ ଉଚ୍ଛିଷ୍ଟ ଉପରେ
ହାଡ଼ରୁ ତୁମର ପଡ଼ୁ ମାଂସ ଖସି, ଖୋଳ ହୋଇ ଆଖି ହୁଏ ଗାଡ଼
ତା ଭିତରେ ଲମ୍ବ ଯାଏ ପ୍ରାଣ ମୋର ଆତ୍ମା ମୋର ଆଉ ମୋର
ମାଟିର ଆକାର ।

ଗମ୍ଭୀର ଉପରେ ଯାଏ ଗ୍ଲାନ ଡେଇଁ କଞ୍ଚାବଣ ଚେଉଲିଠା ମୂଳେ ।
ଗ୍ଲାଇଯାଏ ଛଇଁ ଛପି କାଠଯୋଡ଼ ଝାଲରରେ, କମ୍ବା ଧୂସର ସମୁଦ୍ର
କୂଳରେ

ଘଣ୍ଟ ଯାଏ ଝଣ ଝଣ ଆମର ଏ ଦୋକାନ ବଜାରେ
ସ୍ୱପ୍ନଯାଏ ଉଙ୍କିମାରି ଗଳି ଗଳି କୋଠା ସନ୍ଧିରେ ।

ମୁଁ ତୁମକୁ ଭଲପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା
ସିଂହଳ ଦ୍ୱୀପର ସ୍ୱପ୍ନ ମୁଁ ଯାଇଛି ଜାଣିବାକୁ ଯେବେ
ଲବଙ୍ଗବଣର କଥା, କମ୍ବା କ୍ୟାଥା କଦମ୍ବ କଡ଼ର
ମୋ ଆଖିରେ ଅବାସ୍ତବ ପାଲଟିଛି ଏ ସହର ଜେବେ ।

ଲାବଣ୍ୟବତୀରୁ ତୁମେ ଆସ ଅବା ରସକଲ୍ଲୋଳରୁ
କୋଣାର୍କ କାନ୍ଥରୁ ଅବା ସିନେମାର ପରଦା ଭିତରୁ
ମୁଁ ତୁମକୁ ଭଲ ପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା
ମୋ ପାଖେ ସିଂହଳ ଦ୍ୱୀପ ଯାହା କିନ୍ତୁ ଅସମ୍ଭବ ହୁଏ ।

ତୁମେ ଯେବେ ଆସ ଆଜ ନଗ୍ନଟିଆ ଏ ଜନ୍ମସ୍ଥାନ
ବାଲିଚର ଝୋଳ ଝୋଳ ରେଳ ଯେଉଁଠେ ପଶେ ଭିତରକୁ
ଆଜ ଗତି କୋଳାହଳ ହୋଇ ମିଶିଯାଏ ଦିଗନ୍ତ ଶୂନ୍ୟରେ
ତୁମେ ତେବେ ଆସ ଆଜ ବାସ୍ତବ ବା ସ୍ୱପ୍ନ ଆକାରରେ ।

ମୁଁ ତୁମକୁ ଭଲପାଏ ତୁମେ ଦେବ କଠିନ ଜବାବ
ତୁମେ ପୁଣି ଫେରିବ ସ୍ତା ଏନ୍ତ୍ରି ରେଳ ଲାଇନ କାଠରେ
ତୁମେ ପୁଣି ଦେଖାଦେବ ନଗ୍ନଟିଆ ବାଲି ଚରେ ଚରେ
କେଉଁ ଅସ୍ତ ଜହ୍ନରାତେ ଅବା କେଉଁ ବିବର୍ଣ୍ଣ ସନ୍ଧ୍ୟାରେ ।

ତୁମରି ଦାନ୍ତରେ ମୋର କଣ୍ଠ ଯିବ ଛିନ୍ନ ଭିନ୍ନ ହୋଇ
ତୁମର ସ୍ମୃତିରେ ଯିବ ବଳିହୋଇ ବାଲିଚର ନିର୍ଜନ ନିଦାଘ
ତୁମର ଦେହର ରକ୍ତ ପାଣି ଫାଟି ଥଣ୍ଡା ହୋଇଯିବ
ତୁମର ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ ।

ମୁଁ ତୁମକୁ ଭଲପାଏ ପ୍ରାଣପାତ କରି ମୋର ଦେହ ମୋର ବିସର୍ଜନ କରି
ଆଜ ରାତି ଅସ୍ତାହୁଏ ସାଙ୍କ ହୋଇଆସେ ଦିଗ୍‌ବଳୟ
ଭକ୍ତିହୀନ ତୁମେ ମୋର, ଆଉ ମୋରି ଜୀର୍ଣ୍ଣ ସର୍ବ ପୋତି
ଅନ୍ତରର ଯୁକ୍ତିହୀନ ମାତୃବଳେ ଦୁର୍ନିବାର ସମସ୍ତ ସମସ୍ତ ।

କବି ଗୁରୁପ୍ରସାଦଙ୍କ 'ପ୍ରିୟ ବାନ୍ଧବୀ' କବିତା ପଢି ସାରିଲା ପରେ ଯେଉଁ ଧାରଣା ଆସେ ସେଗୁଡ଼ିକୁ ନିମ୍ନୋକ୍ତ ପାଞ୍ଚୋଟି ପର୍ଯ୍ୟାୟରେ ଆଲୋଚନା କରାଯାଇପାରେ :

(କ) 'ପ୍ରିୟ ବାନ୍ଧବୀ' କବିତା ସହିତ ଗୁରୁବାବୁଙ୍କ 'ସମୁଦ୍ରସ୍ନାନ' ବହିର ଅଧିକାଂଶ କବିତା ସମ୍ପର୍କିତ । ଏ କବିତାକୁ ପୃଥକ୍ କରି ବିଚାର କରିବା ପ୍ରାୟ ଅସମ୍ଭବ ।

(ଖ) 'ପ୍ରିୟ ବାନ୍ଧବୀ'ରୁ ମିଳୁଥିବା ବ୍ୟଞ୍ଜନା, ପରୋକ୍ଷତା ଓ ରୂପକ ପ୍ରଭୃତି ମାଧ୍ୟମରେ ଯେଉଁ ପ୍ରେମିକତା ପ୍ରକାଶ ପାଇଛି ତାହା ତାଙ୍କର ପୂର୍ବସୂରୀ ମାନସିଂହ, ଗଡ଼ନାୟକ, ବିନୋଦ ନାୟକ ଓ ସଚି ରାଉତରାୟଙ୍କ ପ୍ରେମିକତାଠାରୁ ସ୍ୱତନ୍ତ୍ର । ନିବିଡ଼ ଦେହଧର୍ମୀତା ଏହାର ସେତିକି ବିଶେଷତ୍ୱ, ପ୍ରକୃତି ସହିତ ଏକାତ୍ମୀୟତା, ଆଧୁନିକ ବୁଦ୍ଧିଜୀବୀର ବହୁମୁଖୀ ମାନସିକ ଅସମାନତା ଅଥଚ ବହୁ ବ୍ୟାପକ ବୌଦ୍ଧିକ ଆୟତନ ପ୍ରଭୃତି ମଧ୍ୟ ଏହାର ସେତିକି ଉତ୍କର୍ଷ ।

(ଗ) 'ପ୍ରିୟ ବାନ୍ଧବୀ'ରେ କବିଙ୍କର କାବ୍ୟତତ୍ତ୍ୱ ମୁଖ୍ୟତଃ ଇଲିୟଟ୍‌ଙ୍କ ପୋଏଟିକ୍‌ସ ଦ୍ୱାରା ପ୍ରଭାବିତ ।

(ଘ) ଗୁରୁବାବୁଙ୍କ କବିତାରେ ପ୍ରକୃତି ବର୍ଣ୍ଣନା, ଏହାର କାବ୍ୟ ପୁରୁଷର ବ୍ୟକ୍ତିତ୍ୱ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ, ଅର୍ଥାତ୍, ପ୍ରକୃତି ବର୍ଣ୍ଣନାକୁ କବିତାର ମୂଳ ଚରିତ୍ରଠାରୁ ବିଚ୍ଛିନ୍ନ କରାଯାଇ ପାରିବ ନାହିଁ ।

(ଙ) କବିତାରେ ଆଙ୍ଗିକ ଦୃଷ୍ଟିରୁ ମାନସିଂହ, ଗଡ଼ନାୟକ ଓ ସଚି ରାଉତରାୟଙ୍କ କାବ୍ୟଶୈଳୀର ପରମ୍ପରା ଭାଙ୍ଗି ଗୁରୁବାବୁ

ଯେଉଁ ନୂଆ ବାଗ୍‌ଧାରା ଓ ଆଙ୍ଗିକ ପ୍ରଚଳନ କରିଛନ୍ତି, ସେ ସବୁ ତାଙ୍କର ପରବର୍ତ୍ତୀ ବହୁ କବିଙ୍କଦ୍ୱାରା ଏ ପର୍ଯ୍ୟନ୍ତ ମଧ୍ୟ ଅନୁସୃତ ହେଉଛି ।

ଏହି କବିତାର ଆରମ୍ଭ ପ୍ରକୃତି ବର୍ଣ୍ଣନାରୁ । ପ୍ରଥମ ପାଞ୍ଚଟି ପାରାଗ୍ରାଫ୍‌ର ଗଢ଼ଣ ମୁଖ୍ୟତଃ ରୋମାଣ୍ଟିକ୍ ଗଢ଼ଣ ବୋଲି ପ୍ରଥମ ପଠନରେ ମନେହୁଏ । କିନ୍ତୁ ଏହି ଆପାତ ରୋମାଣ୍ଟିକ୍ ଭଙ୍ଗୀ ଅନ୍ତରାଳରେ ବୁଦ୍ଧିଜୀବୀ ପ୍ରେମିକ-ମାନସର ଅସ୍ଥିର-ମନା ବିଶ୍ଳେଷଣ ପ୍ରବଣତା, ସନ୍ଦେହ, ସିନିସିଜିମ୍, ଅତୀତ ସ୍ମୃତିର ରୋମନ୍ଥନ ଓ ଅନୁପସ୍ଥିତା ବାନ୍ଧବୀକୁ ପୁଣିଥରେ ନିବିଡ଼ ଭାବେ ପାଇବାର ଆବେଗ ଲକ୍ଷ୍ୟ କରାଯାଇପାରେ । କିନ୍ତୁ ସମାନ ଭାବରେ ଏହି ଆବେଗ ମଧ୍ୟ ତାଙ୍କର 'ଶରତ ଋତୁରେ ଜହ୍ନ', 'ଶଠି', 'ନିହ୍ନୁତ ଗୋଧୂଳି', 'ସନେଟ-ଏକ' 'ଦୁଇ' 'ତିନି' 'ଚାରି' 'ପାଞ୍ଚ' ଓ 'ନଅ'ରେ ପ୍ରତିଫଳିତ ।

ଏକାବେଳେକେ ରୋମାଣ୍ଟିକ୍ ହୃଦୟାବେଗ ସଞ୍ଜାତ ଶ୍ଳାକ୍ଷଣ ଓ ସ୍ପଷ୍ଟ ଆଧୁନିକ ଚେତନାର ସମନ୍ୱୟ, ପୁଣି ତାତ୍ପର୍ଯ୍ୟପୂର୍ଣ୍ଣ ବ୍ୟଞ୍ଜନା, ପ୍ରଥମ ପୁରୁଷର ସଂଳାପ ଆଦି ସୂକ୍ଷ୍ମ ସଙ୍କେତତା (ଆଲ୍ୟୁଜନ), ରୂପକ (ଆଲିଗୋରି) ଏବଂ ସର୍ବୋପରି ଏକ ନୂଆ ଦୃଷ୍ଟିକୋଣ ଫଳରେ ଗୁରୁପ୍ରସାଦଙ୍କ ପ୍ରେମିକତା ଅନ୍ୟାନ୍ୟ ପୂର୍ବସୂରୀମାନଙ୍କର ପ୍ରେମିକତାଠାରୁ ସ୍ୱତନ୍ତ୍ର ବୋଲି ସ୍ୱତଃ ଜଣାପଡ଼ୁଛି । 'ତୁମର ଅସ୍ପଷ୍ଟ ସ୍ଥିର ତୁଠେ ତୁଠେ ଛପି ଗଲାବେଳେ/ସେତେବେଳେ ମୁଁ ଦେଖିଚି ବା ସନ୍ଦେହର ଦେଖା' ଧାଡ଼ି ଦୁଇଟିର ଅର୍ଥ—ତୁମେ ଅନ୍ୟମାନଙ୍କ ମେଳରେ ଥିଲାବେଳେ ତୁମକୁ ଦେଖି ତୁମେ ନା ଆଉ କିଏ ଏ ସନ୍ଦେହରେ ମୁଁ ପଡ଼ୁଛି । 'ସନ୍ଦେହର ଦେଖା'—ଏହି ଖଣ୍ଡ ବାକ୍ୟଟିର

ସଂକ୍ଷିପ୍ତତା ଏଥିପାଇଁ ସ୍ୱତଃସ୍ଫୂର୍ତ୍ତ । ସବୁ ପ୍ରେମିକତା ପରି କବିଙ୍କର ପ୍ରେମିକତା ଅତୃପ୍ତମନ, ବିଦଗ୍ଧ ଅଥଚ ଅନୁଭବ-ଗଭୀର । କିନ୍ତୁ ଦୂର ଓ ନିକଟ, ଅତୀତ ଓ ବର୍ତ୍ତମାନ, ଦୃଶ୍ୟ ଓ ଅଦୃଶ୍ୟର ବିଭିନ୍ନ ବିଚିତ୍ର ଓ ପରସ୍ପର ବିରୋଧି ଅନୁଭୂତି ତଥା ସଂଶୟର ରୂପକରେ କବିଙ୍କର ଦୁରାରୋଗ୍ୟ ମନ ବିଭିନ୍ନ ବିସ୍ମିତ :

ତୁମେ ଯଦି ମିଛକଥା, ତୁମେ ଯଦି ବହି ଦୋକାନରେ
ଆଧୁନିକ ପ୍ରେମ ଗଳ୍ପ, ତୁମେ ଯଦି ରେଡ଼ିଓ ଖବର
ତୁମେ ଯଦି ଫିଲ୍ମଗୀତ ଥାର୍ଡ଼କ୍ଲାସ ରେଲଟିକଟ ଘର
ତୁମେ ଯଦି ବଜାରରେ ଲୁଗା ଚିନି ଚୋରା କାରବାର

ଏ ଧାଡ଼ି ଗୁଡ଼ିକରେ ପ୍ରେମିକାର ଚେତନା ବିଂକ୍ରି-ନିରପେକ୍ଷତା ସ୍ପଷ୍ଟ କରିଛି । ବିଭିନ୍ନ ବର୍ଣ୍ଣର ସମନ୍ୱିତ ସୌଷ୍ଠବରେ ଭାବବୋଧ ତଥା ଅଭିଜ୍ଞତାର ପୃଥକ୍ ପୃଥକ୍ ଅନୁସଙ୍ଗ ଗୁଡ଼ିକ ତାଙ୍କ ଲେଖାରେ ପର୍ଯ୍ୟାପ୍ତ । ଏଠାରେ ପ୍ରେମିକା ବା ତତ୍‌ସମଜାତୀୟା ବାନ୍ଧବୀମାନଙ୍କୁ, ସବୁ କାରଣ ଓ ଅକାରଣର ମୂଳ ଉତ୍ସ ଭାବରେ କେବଳ ଯେ ଚିହ୍ନିତ କରାଯାଇଛି ତା ନୁହେଁ, କବି ମନର ବିଭିନ୍ନବିଧ ଅଭିଜ୍ଞତା ମଧ୍ୟରେ ପରସ୍ପର ଖାପଛଡ଼ା ଘଟଣାବହୁଳତା, ବାନ୍ଧବୀ ସମ୍ବନ୍ଧୀ ଆଳାପ ଆଲୋଚନା, ରେଡ଼ିଓରେ ସିନେମାଗୀତଠାରୁ ଆରମ୍ଭକରି, ବଜାରରେ ଚିନି ଓ ଲୁଗାର ଚୋରା କାରବାର ପର୍ଯ୍ୟନ୍ତ ପ୍ରତ୍ୟେକ ଘଟଣା, ଚିନ୍ତା ଓ ଚେତନା ନେପଥ୍ୟରେ ଜଣେ ନା ଜଣେ ନାୟିକା ପ୍ରଚ୍ଛନ୍ନ— ସେ ସବୁର ଆଭାସ ଓ ଇଙ୍ଗିତ ଏଠାରେ ସ୍ପଷ୍ଟ ।

ସବୁ ପ୍ରେମିକ କବିଙ୍କ ଭଳି ସେ ମଧ୍ୟ ନିଜ ପ୍ରେମିକା ସହିତ ପ୍ରତ୍ୟକ୍ଷ ନିବିଡ଼ ସଯୋଗ ପ୍ରବଳଭାବେ ଆଶା କରିଛନ୍ତି । ତେଣୁ ତାଙ୍କ ଭାଷାରେ :

'ତୁମେ ଆସ ଆଜ ଆସ ମିଳ ଲୁଗା·········
·········ପୁଞ୍ଜ ଭୂତ ଯେତେ ବ୍ୟଭିଚାର ।'

ମାନସିଂହ, ଗଡ଼ନାୟକ ପ୍ରଭୃତିଙ୍କ ପ୍ରେମିକତାଠାରୁ ଏହା ଅନେକାଂଶରେ ଭିନ୍ନ; ନିମ୍ନ ଦୃଷ୍ଟାନ୍ତଗୁଡ଼ିକ ଏହି ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ ।

'ବନ୍ଧୁକେ ଗୃହେଁ ଅଭିସାର କର ଏଠାବେ
ବାସକସଜ୍ଜା ରହିବି ମୁଁ ସାରା ଯାମିନୀ
ଆସ କେ ଆସିବ କବରୀ କୁସୁମ-ପରାଗେ
ଉଦ୍‌ବେଳ କରି ହୃଦୟ ଏ, ବର-କାମିନୀ
('ପ୍ରଣୟୀ'—ମାୟାଧର ମାନସିଂହ)

''ଚନ୍ଦନ କରିଦିଅ ପ୍ରତି ତରୁ ତୁମେ ଗୋ
ନନ୍ଦନ ଭରିଦିଅ ତୃଷିତ ମରୁଭୂମେ ଗୋ
ଦିଅ ତବ ଆଶ୍ଳେଷ ଦିଅ ତବ ପରଶ
କବି-ଜୀବନ ଏ ମମ ହେଉ ନବ ସରସ ।
(—'ବସନ୍ତ ସଖୀ', ରାଧାମୋହନ ଗଡ଼ନାୟକ)

ହେ ସଖି । ତୁମର ପ୍ରୀତି
ପଥେ ପଥେ ଫୁଲ ହୋଇ ଆହ୍ୱାନ ଜଣାଏ
ଦେହାତି ନାରୀର ଚକ୍ଷେ ପାଏ ମୁହିଁ
ତୁମର କଟାକ୍ଷ
ତୁମର ଷୋଡ଼ଶୀ-ଦେହ-ଗନ୍ଧ ମିଳେ
ନୂତନ ଶସ୍ୟରେ ।
('ହୀରକ ସ୍ୱପ୍ନ'— ବିନୋଦ ଚନ୍ଦ୍ର ନାୟକ)

ସହସ୍ର ଫାଲ୍‌ଗୁନ ଥିଲା ତୁମର ଆଖିରେ
ସହସ୍ର ଜହ୍ନର ହସ ଥିଲା ତୁମ ଓଠରେ ।
ତଥାପି ମୁଁ ଭାବଥିଲି ପିଇସାରିଛି ସବୁ ରସ
ଫେଡ଼ି ଦେଇଛି ଶୂନ୍ୟ କଳସ ।
ତୃପ୍ତିର ଶୁଷ୍କ ମରୁଭୂମି—
ଭାବେ ଯେପରି ପିଇ ସାରିଛି ଦକ୍ଷିଣ ସାଗରର
ସବୁ ମୌସୁମୀ
ଅତନ୍ଦ୍ର ଯୌବନ ନଶାରେ
ଆଜ କହେ ମୁଁ ନିଜକୁ ନିଜେ ଡାକି
ସବୁ ଶପଥ ଫାଙ୍କି
ଦୀର୍ଘ ଯୁଗର୍ଷ୍ଟି ବିଚ୍ଛେଦ, ଅବସାଦ
କ'ଣ ତୁମର ପ୍ରେମର ଅନୁବାଦ ?

( 'ସ୍ମରଣୀୟାସୁ': ସଚ୍ଚି ରାଉତରାୟ )

ଉପରୋକ୍ତ ସମସ୍ତ କବିତା ନିଛକ ଭାବେ ରୋମାଣ୍ଟିକ୍ କବିତା । କବିର ବ୍ୟକ୍ତିତ୍ୱ, ବ୍ୟକ୍ତିଗତ ପ୍ରେମିକା-କେନ୍ଦ୍ରିକ ଭାବନା ଏଠାରେ ମୁଖ୍ୟ । ଅନୁଭୂତିରେ ବହୁମୁଖୀତାର ଅଭାବ, ବିଦଗ୍ଧ, ବୌଦ୍ଧିକତା ଓ ଭାବବୋଧର ଗଭୀର ସମନ୍ୱୟତାର ଅଭାବ, ସର୍ବୋପରି ଆକାଶ-ପାତାଳ, ଅତୀତ-ବର୍ତ୍ତମାନ, ସସୀମ ଓ ଅସୀମର ଦୁରନ୍ତ ବ୍ୟବଧାନକୁ ଯୋଡ଼ି ପ୍ରକୃତିର ସାଯୁଜ୍ୟ, ରୂପକଳ୍ପ ଭିତରେ ଏହି କବିମାନେ ସେମାନଙ୍କର ପ୍ରେମିକତାକୁ ଆଧୁନିକ ପ୍ରେମିକତାରେ ପର୍ଯ୍ୟବସିତ କରି ପାରି ନାହାନ୍ତି । ସୁତରାଂ ଗୁରୁବାବୁ ଏହିକାରଣରୁ ପୂର୍ବବର୍ତ୍ତୀ କବିମାନଙ୍କଠାରୁ ପୃଥକ । ତାଙ୍କର ବାନ୍ଧବୀ ତାଙ୍କର

ଦୈନନ୍ଦିନ ଚିନ୍ତନ, ଚେତନ, ଜ୍ଞାନ, କର୍ମ, ଅଭିଜ୍ଞତା, ଦର୍ଶନ ତଥା ସୌନ୍ଦର୍ଯ୍ୟବୋଧ ଭିତରେ, ପ୍ରବଳ ଭାବରେ ବଂଚି ରହିଛି । ବଞ୍ଚି ରହିଛି ପୁଣି ରୋମାଣ୍ଟିକ କବିମାନଙ୍କ ଭଳି ଗୁରୁପ୍ରସାଦଙ୍କ ପ୍ରାଣାବେଗ ମଧ୍ୟରେ । କବି ଜୀବନ ବିଚିତ୍ର ଅଭିବ୍ୟକ୍ତି, ଐଶ୍ୱର୍ଯ୍ୟ, ଲାଞ୍ଛନା ସ୍ୱପ୍ନିଷ୍ଟତା, କ୍ଷତ, ସ୍ୱପ୍ନଭଙ୍ଗ, ଅନ୍ତର୍ଦ୍ୱନ୍ଦ୍ୱ ସର୍ବୋପରି ସମସ୍ତ ଚେତନା ଭିତରେ ଅନ୍ତର୍ବାହିତ । କବି ସମସ୍ତର ମନୁଷ୍ୟଟି ହୋଇଛି ତା ନିଜର Style । ତା'ର ପ୍ରେମିକତା, ତାର ଆତ୍ମିକ ଗମ୍ଭୀରତା ଓ ବହୁବିସ୍ତୃତ ।

ଏହା ପରେ କବିତାର ଦେହଧର୍ମୀ ଦିଗ ସମ୍ବନ୍ଧରେ ଆଲୋଚନା କରାଯାଉ । ଡ଼ଃ ମାୟାଧର ମାନସିଂହ ତାଙ୍କର 'History of Oriya Literature'ରେ ଗୁରୁବାବୁଙ୍କୁ ଏଥି ପାଇଁ ତୀବ୍ର ସମାଲୋଚନାରେ ମୁମୂର୍ଷୁ କରିଛନ୍ତି । (ପୃ-୨୫୮-୨୬୧, ପ୍ରକାଶକ : ସାହିତ୍ୟ ଏକାଡେମୀ, ନୂଆ ଦିଲ୍ଲୀ ) କିନ୍ତୁ ଖୋଦ୍ ମାନସିଂହଙ୍କର ମଧ୍ୟ ଦେହଧର୍ମୀ କବିତା ଅଛି : ''ଜଳିଉଠ ଯେ ଦୀପଶିଖା ଜଳୁଛି ତାହାରେ/ତବ ରୂପଶିଖା ଜଳୁ ଘନ ଅନ୍ଧକାରେ । ଲୋଟି ପଡୁ ଉର୍ମିସମ ଅଙ୍ଗବାସ ତବ/ମେଘମୁକ୍ତ ଉଷାସମ ହୁଅ ଦିଗମ୍ବରୀ,'' କିମ୍ବା ଗଡ଼ନାୟକଙ୍କର 'ସ୍ତନ ଉରସ ଖୋଲି ଦିଅ ପ୍ରିୟା' ପ୍ରଭୃତି କବିତା ଏହାଠାରୁ ବେଶୀ ଦୂରବର୍ତ୍ତୀ ନୁହଁନ୍ତି । ଆପାତତଃ ମାନସିଂହଙ୍କୁ ନୂତନ କବିତା ବିମୁଖ, ଅଯଥା ବିରକ୍ତ ଓ ଏପରିକି ପଶ୍ଚାଦ୍‌ମୁଖୀ ( ରିଗ୍ରେସିଭ ) ବୋଲି ଧରାଗଲେ ବି ଏହି କବିତାରେ—''ଚମ୍ପାଫୁଲ ବେଣୀ ମୂଳେ ଚନ୍ଦଲେଖି ଗୁଚ୍ଛ ଯୋଡ଼ି-କରେ/ତୁମେ ଆସ ତା' ଭିତରୁ ନେଇ ଯାହା ଅଭଦ୍ର ଅଶ୍ଳୀଳ/ତୁମର

ଓଠରୁ ତଳେ ଟୋପା ଟୋପା ଝରଇ/ତୁମେ ଆସ ସଞ୍ଜାଇ ବା ପୁଞ୍ଜି-ଭୂତ ଯେତେ ବ୍ୟଭିଚାର! × + × ତୁମର ଦାନ୍ତରେ ମୋର ଓଠ ଯିବ ଛିନ୍ନ ଭିନ୍ନ ହୋଇ। ତୁମର ଗୁଣ୍ଡରେ ଯିବ ଦଳି ହୋଇ ବାଲ୍ୟ-ତର ନନ୍ଦନ୍ କାନନ/ତୁମର ଦେହର ରକ୍ତ ପାଣି ଫାଟି ଥଣ୍ଡା ହୋଇ ଯିବ / ତୁମର ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ” ଇତ୍ୟାଦି ଧାଡ଼ିଗୁଡ଼ିକ ପ୍ରକୃତରେ ଦେହଧର୍ମୀ ଆବେଗକୁ ବହନ କରନ୍ତି। ମଣିଷକୁ ‘ଭଲ ପାଇବା’ ଭିତରେ ଦୈହିକ ମିଳନ ଏକ ପର୍ଯ୍ୟାପ୍ତ। ଏହି କବିତାରେ ଏକାବେଳକେ ଦେହଜାତ ସହିତ ଆଧୁନିକ ଚେତନାର ପରିପକ୍ୱ ସମନ୍ୱୟ ଗୁରୁବାବୁ ଯେପରି କରି ପାରିଛନ୍ତି ସେପରି ସମନ୍ୱୟ କରିବାରେ ଏହାଙ୍କ ପରବର୍ତ୍ତୀ କବି ରମାକାନ୍ତ ରଥଙ୍କୁ ଛାଡ଼ିଦେଲେ ଅନ୍ୟ କେହି ସଫଳ ହୋଇଛନ୍ତି ବୋଲି ମନେ ହୁଏ ନାହିଁ। ନିଜ ପ୍ରେମିକା ସହ ସିଧା ସଳଖ ସ୍ଥାୟୀ ମିଳନ ଏହି କବିତାର ସମଗତିଶୀଳ ତାର ଚୂଡ଼ାନ୍ତ ବିନ୍ଦୁରେ କବି ଇଚ୍ଛା କରିଛି। ସେ ନିଜେ ମିଳନର ସକଳ ଉପକରଣରୁ ବଞ୍ଚିତ, ବ୍ୟାକୁଳପ୍ରାଣ ଓ ସଂଶୟାକୁଳ। ସେ ଅଧିକ ଯନ୍ତ୍ରଣା ଓ ନୈରାଶ୍ୟ ନିଜ ମସ୍ତିଷ୍କରେ ବହନ କରିବାକୁ ଶିକ୍ଷିତ ହୋଇଥିଲେ ବି ପ୍ରେମିକାର ଶରୀର-ଘନିଷ୍ଠ ହେବାର ପରିଣତି ପାଇଁ ପିପାସିତ। ସେହି ସମସ୍ତ ଅଳଙ୍କରଣହୀନ ସ୍ପଷ୍ଟୋକ୍ତିକୁ କେବଳ ‘ଦେହ ଧର୍ମୀ’ ଦୋଷରେ ତେଣୁ ଅଭିଯୁକ୍ତ କରିବା ପକ୍ଷପାତିତାପୂର୍ଣ୍ଣ ହେବ।

ଦେହବାଦୀ କବି ମାନଙ୍କର ଯୁକ୍ତି ହେଲା ଯଦି ମଣିଷକୁ ‘ଭଲ ପାଇବା’ କୌଣସି ପ୍ରକାର ‘ପାପ’ ହୁଏ, ତେବେ ତାହା ମଣିଷ ସହିତ ଗ୍ରଥିତ ଏକ ପ୍ରକାର ‘ମୌଳିକ ପାପ’ (ଅରିଜିନାଲ୍ ସିନ୍)

ବହୁ ଅତୀତ କାଳରୁ ତ କୁହାଯାଉଛି 'ଶୃଙ୍ଗାରି ଚେତ୍ କବିଃ'। ଦେହ ପ୍ରତି ଆସକ୍ତି ଜୀବନଠାରୁ ସଂପୂର୍ଣ୍ଣ ଅବିଚ୍ଛେଦ୍ୟ, ଅବିଭାଜ୍ୟ। ପୁଣି ଦେହବାଦୀ କବିତା ଯେ ଆଧୁନିକ କବିତା ହୋଇ ପାରିବନାହିଁ ଏପରି କଥା କୌଣସି ଶାସ୍ତ୍ର କି ବ୍ୟାକରଣରେ ନାହିଁ। କିନ୍ତୁ ନିଛକ ଦେହଧର୍ମୀ କବିତାକୁ ଆଧୁନିକ କବିତାର ବିପୁଳ ଭାବାତ୍ମକ କମ୍ପୋଜିସନ୍ ତୁଳନାରେ ନ୍ୟୂନ ବୋଲି ମନେ କରାଯିବା ସ୍ୱାଭାବିକ୍। 'ପ୍ରିୟ ବାନ୍ଧବୀ' କବିତାରେ ଦୈହିକ ଆବେଗ ଯେ ନିହିତ ଏହା ସ୍ପଷ୍ଟ। କିନ୍ତୁ ନାରୀ ଓ ଶୃଙ୍ଗାର ଭାବାପନ୍ନ ହୋଇଥିବାର ଇଙ୍ଗିତ, କିମ୍ବା ବୃଦ୍ଧେ ଓ ତରୁଣ ମାନସିକତା, ଏବଂ ମିଳନ ବେଗର ଉଚ୍ଛୃଙ୍ଖଳ ଆବେଗ ଏହାର ଶେଷ କଥା ନୁହେଁ। ଏଥିରେ ଆହୁରି ଅନେକ ବୈଷମ୍ୟ ଅଛି, 'ଗ୍ୟାରେଣ୍ଟି ଯୁକ୍ତପ୍ରେମ' ନମିଳିବାହିଁ ସବୁଠାରୁ ମୁସ୍କିଲ୍ ବ୍ୟାପାର। ସେଇ ମନୋବେଦନାହିଁ ଆଧୁନିକ ମଣିଷର ନିଉରୋସିସ୍ ପାଇଁ ଦାୟୀ।

ଏ କବିତା ସମେତ ଗୁରୁବାବୁଙ୍କ ଅଧିକାଂଶ କବିତାର କାବ୍ୟତତ୍ତ୍ୱ ଏଲିଅଟ୍ଙ୍କ କାବ୍ୟତତ୍ତ୍ୱ ଅନୁରୂପ। ଏଲିଅଟ୍ଙ୍କର 'ଅବ୍‌ଜେକ୍ଟିଭ୍ କରିଲେଟିଭ୍, ଇଉନିଫିକେସ୍‌ଅଫ୍ ସେନସିବିଲିଟି' ପ୍ରଭୃତିର ପ୍ରୟୋଗ ଓ ପରୀକ୍ଷା ଗୁରୁବାବୁଙ୍କ କବିତାରେ ସହଜଲଭ୍ୟ। 'ତୁମେ ଯଦି ମିଛକଥା... ଲୁଟାଇନ ମୈରକାରବାର' ଧାଡ଼ି ଗୁଡ଼ିକ ହିଁ ଇଉନିଫିକେସନ୍ ଅଫ୍ ସେନ୍‌ସିବିଲିଟି'ର ଦୃଷ୍ଟାନ୍ତ। ଏଲିଅଟ୍ଙ୍କ ମତରେ ଜଣେ ସାଧାରଣ ପାଠକ ଯାହା ଚିନ୍ତାକରେ ତାହା ବିଶୃଙ୍ଖଳ, ରୁକ୍ଷ, ଅସଂଲଗ୍ନ, ଅଡୁଆ ତଡୁଆ; ଖଣ୍ଡିତ ଓ ଏପରିକି କିମ୍ଭୂତ କିମ୍ଭାକାର ହୋଇପାରେ। ମାତ୍ର ଜଣେ କେହି ଏକାବେଳେକେ ତା'ର ନାରୀ ବନ୍ଧୁକୁ ପ୍ରେମକରିପାରେ,

ସ୍ପିନୋଜା ଓ ଡର୍ଜିଲ ପଢ଼ି ପାରେ, ପୁଣି ଜଫିଂଦୋକାନ ର ବାସ୍ନା କିମ୍ବା ଟାଇପ୍ ରାଇଟରର ଗତାନୁଗତିକ ଦେହ୍ଯଘଷା ଶବ୍ଦ ଶୁଣି ପାରେ । ଜଣେ ସାଧାରଣ ବ୍ୟକ୍ତି ପାଇଁ ଏ ପରସ୍ପର ପୃଥକ୍ କାର୍ଯ୍ୟଗୁଡ଼ିକ ଭିତରେ ଆଦୌ କୌଣସି ସଂପର୍କ ନାହିଁ । କିନ୍ତୁ କବି ମନରେ ତାହା ସବୁ ନୂଆ ରୂପକଳ୍ପ ସୃଷ୍ଟି କରି ତାର ରଚନାରେ ସୁସମନ୍ୱିତ ଓ ସୁନିର୍ବାଚିତ ହୋଇ ପ୍ରକାଶ ପାଆନ୍ତି । ଗୁରୁବାବୁ ଏହି ଥିମ୍‌ଗୁଡ଼ିକୁ କାର୍ଯ୍ୟରେ ଲଗାଇ ମିଲ୍‌ଲୁଗା ପାଲଟାଉଥିବା, ବନାରସୀ ସିଲ୍‌କ ପିନ୍ଧା ହଳଦୀଲଗା ଦେହ, ବେଣୀମୂଳେ ଚମ୍ପାଫୁଲ ଖୋସିଥିବା ଓ ସୁନ୍ଦର ଯୋଡ଼ାଜାରେ ରଡ଼ ଲେଖିଥିବା, ମାଟି ଉପରୁ ବା ଆକାଶ ଭିତରୁ ପ୍ରିୟକୁ ବାହିବାକୁ ସନ୍ଧାନ କରୁଛନ୍ତି । ଏସବୁ ଗୋଟିଏ ନାରୀ ବିଷୟରେ କୁହାଯାଉଥିଲେ ବି ଏକାବେଳେକେ ବଧୂ, ପ୍ରେମିକା, ବାରନାରୀ, ସ୍ୱାଧୀନ ଭର୍ତ୍ତିକା, ଲଞ୍ଜିୟ କାବ୍ୟନାୟିକା, ବାସକସଜ୍ଜା, ଓ ବୈଷ୍ଣବୀୟ 'ସମର୍ଥା' ପର୍ଯ୍ୟନ୍ତ ଏବଂ ସେଥି ସହିତ ମିଲ୍‌ଲୁଗା ପିନ୍ଧୁଥିବା ଯମସାମୟିକା-ମାନଙ୍କୁ ବି ଏକାଠି ଗ୍ରଥିତ କରୁଛି । ଏ ଗ୍ରନ୍ଥନ ପ୍ରଣାଳୀ ଓଡ଼ିଆ ସାହିତ୍ୟରେ ଏହାପୂର୍ବରୁ ଏତେ ସ୍ପଷ୍ଟଭାବେ ପ୍ରକାଶିତ ହୋଇ ନଥିଲା । 'ସେହି ପରି: ମୁଁ ତୁମକୁ ଭଲପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା/ ସିଂହଳ ଦ୍ୱୀପର ସ୍ୱପ୍ନ ମୁଁ ଯାଉଛି କିଣିବାକୁ ଯେବେ/ଲବଙ୍ଗ ବଣର କଥା କିମ୍ବା ବାଥା କଦମ୍ବକଡ଼ର/ମୋ ଆଖିରେ ଅବାସ୍ତବ ଏସବୁର ପାଲଟିଛି ତେବେ ।' ପୁଣି, 'ଲବଣ୍ୟବଣରୁ ତୁମେ ଆସ ଅବା ରସକଲ୍ଲୋଳରୁ/ କୋଣାର୍କ କାନ୍ଥରୁ ଅବା ସିନେମାର ପରଦା ଭିତରୁ / ମୁଁ ତୁମକୁ ଭଲ ପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା/ମୋ ପାଇଁ ସିଂହଳ ଯାତ୍ରା କିନ୍ତୁ ଅସମ୍ଭବ ହୁଏ ।' ପ୍ରଭୃତି ଅନ୍ୟ କେତେକ ଦୃଷ୍ଟାନ୍ତ ।

ପ୍ରେମିକ ଚନ୍ଦ୍ରଭାନୁ ଠାରୁ ଏଯୁଗର ପ୍ରେମିକ କବିଯେ ଭିନ୍ନ ତାହା

ସେ ନିଜେ ସ୍ପଷ୍ଟ କରି ଦେଇଛନ୍ତି । ଏଠାରେ ପ୍ରେମିକା, ଦେଶ, କାଳ ଓ ପାତ୍ରର ସସୀମତାରେ ଆବଦ୍ଧ ନୁହେଁ । ପ୍ରେମିକତାର ଚେତନା କେନ୍ଦ୍ରାଭିମୁଖୀ ହୋଇ ମଧ୍ୟ କେନ୍ଦ୍ରାପସାରୀ । ହୋଲେ ମଧ୍ୟରେ କାବ୍ଲ୍ୟ ବ୍ୟାଜସ୍ତୁତି ମଧ୍ୟ ଲକ୍ଷଣୀୟ । ଠିକ୍ ଏକା ପ୍ରକାର ବକ୍ରୋକ୍ତି ମଧ୍ୟ ରହିଛି । ତାଙ୍କର 'ଗୋବର ଗଣେଶ' କବିତାରେ:'ମୁଁ ନୁହେଁ ଧୂରର ସାଥୀ / ଗାଲସ୍କୁଲ,ଚୁମ୍ବନ ବା ରମ୍ପୁର ନାପୁନି/ବୃରଙ୍କଳା ଅଭାବ ମୋ ଠାରେ ।' (ମାନସିଂହଙ୍କ ପ୍ରେମ କବିତା ସଂକଳନ 'ଧୂପ' । 'ଗାଲ୍‌ସ୍କୁଲ୍' 'ଚୁମ୍ବନ' କବିରେନ୍ଦ୍ର କାଳିଚରଣଙ୍କ ଦୁଇଟି ନାଟକ), ଏ ପ୍ରକାର ରୋମାଣ୍ଟିକ୍ ସ୍ୱପ୍ନବିଳାସୀ–ବାନ୍ଧବୀ–ଆଶାପୂରୀ ନାୟକ ହେବା ଏ 'ଲୁଗା–ଟାନ–ଟ୍ରେସ୍ କାରବାର' ଯୁଗରେ ଯେ ଉପହାସ୍ୟ, ଅଥଚ ପ୍ରେମର ନିରଙ୍କୁଶତା–ସ୍ୱପ୍ନରେ ଯେ କାବ୍ୟ–ପୁରୁଷକୁ ମୁଗ୍ଧ କରି ପାରେ ତାହାହିଁ ଏଠାର ଉପଜୀବ୍ୟ । ଏସବୁ ସତ୍ତ୍ୱେ ପ୍ରେମିକାକୁ ନିବିଡ଼କରି ପାଇବାର ଇଚ୍ଛା ବହୁ ବିଭକ୍ତ ଅସଂପୃକ୍ତ;କଣ୍ଟକିତ ଚିନ୍ତାଧାରାଭିତରେ ମଧ୍ୟ ବଳବତ୍ତର ରହିଛି । ଉପରୋକ୍ତ ଭାବଧାରା ସହିତ ସାମଞ୍ଜସ୍ୟ ରକ୍ଷା କରୁଥିବା ଇଂରେଜକବି ଅଡେନ୍‌ଙ୍କ Spain 1917 ନାମକ ଗୋଟିଏ କବିତା ଦ୍ରଷ୍ଟବ୍ୟ । ସେକବିତାରେ ନିଜକୁ କବି ଅଡେନ ଜୀବନ–ବାନ୍ଧବୀର ଏକାଦିକଳକେ,'Yes man bar companion, easily duped, your vow to be good, humorous story,business voice ଇତ୍ୟାଦି ବୋଲି ଶପଣ କରିଛନ୍ତି । ଏହା ଭିତରେ ପରସ୍ପର ବିରୋଧି ବହୁ ଧାରଣା ଓ ପ୍ରତ୍ୟୟର ସମନ୍ୱୟ ଘଟିଛି । ଠିକ୍ ସେମିତି ଗୁରୁବାବୁ ନିଜର ବାନ୍ଧବୀକୁ 'ବସ୍ତ୍ର ଦୋକାନ, ରେ ଆଧୁନିକ ପ୍ରେମ ଗଳ୍ପ' 'ଫିଲ୍ମ ଗୀତ' ଇତ୍ୟାଦି ଇତ୍ୟାଦି ବୋଲି ଉଲ୍ଲେଖ କରିଛନ୍ତି । ଏଗୁଡ଼ିକର ତାତ୍ପର୍ଯ୍ୟ କବି ଅଡେନ୍‌ଙ୍କ ଉକ୍ତିଠୁ

ମିଳୁଥିବା ତାତ୍ପର୍ଯ୍ୟ ତୁଳନାରେ କୌଣସି ଗୁଣରେ, ନ୍ୟୁନ ନୁହେଁ । ନଗର ନାୟିକାକୁ ଲବଣ୍ୟବତୀରୁ, କୋଣାର୍କ କାନ୍ଥରୁ, ସିନେମାର ପରଦା ଭିତରୁ ଅନ୍ୱେଷଣ ଭିତରେ ପରମ୍ପରା ସହିତ ବର୍ତ୍ତମାନର ଅଭିଜ୍ଞତାର ସମନ୍ୱୟ କରି ନେଇ ଏହା ପରେ ପରେ ନାଟୋକ୍ତି('ମୋ ସିହଳ ଦ୍ୱୀପ ଯାଆ କାହିଁ ଅସମ୍ଭବ ହୁଏ') ଦେବା କବିଙ୍କର ବୈଦଗ୍ଧ ସହିତ ବ୍ୟଙ୍ଗାତ୍ମକ ଦୃଷ୍ଟି କୋଣର ଆଧୁନିକତା ହିଁ ସୂଚାଇ ଅଛି ।

ଗୁରୁବାବୁଙ୍କ କବିତାରେ ପ୍ରକୃତି ବର୍ଣ୍ଣନା ଏହାର କାବ୍ୟ-ପୁରୁଷର ବ୍ୟକ୍ତିତ୍ୱ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ । କବିଙ୍କ ଚେତନ ଓ ଅବଚେତନ ମନର 'କାଥାର୍ସିସ୍' ଉପଯୋଗୀ ପ୍ରକୃତିକୁ ସେଥିରେ ନିଆ ଯାଇଛି । ସେ ପ୍ରକୃତି ହେଲା : ଉଷର ବିଜନ ବାଲୁଚର ଯେଉଁଠି କ୍ଲାନ୍ତ ଜହ୍ନ ନିଏଁ, ଚନ୍ଦନ ରାତିର ଅୟୁ କ୍ରମେ କ୍ଷୟ ହୋଇ ଆସେ, ନକ୍ଷ 'ପଠା ଶେଷଥର ପାଇଁ କଡ଼ ଲେଉଟାଏ,' (ବିଦାୟୀ ଜହ୍ନର ଆଲୁଅରେ ଆଉ ଗୋଟିଏ ପ୍ରଶ୍ନ ଦେଖାଯିବା ?), ଶୀତଋତୁ ବୁଢ଼ା ହୋଇ ଆସେ, ନଶିଦ ବାଲି ଚରରେ ପବନ ଗୁମୁରିଯାଏ, ସେହି ବାଲିରେ ଆଜିକାଲି ବିବର୍ଣ୍ଣ ସଂଧ୍ୟାରେ କବି ବୁଲି ଯାଆନ୍ତି, ଯେଉଁଠି ଦୀର୍ଘ ଶ୍ୱାସ ଜମିଆସେ ଓ ରାତି ରୁପିହୋଇ ଆସେ—ସବୁଛାତି ଦୁହିଁ ହୋଇ ଏକାକାର ହୁଏ । ଦୂରର ଝାଉଁବଣ ଆଡ଼େଇ ରାତି ଧୀରେ ଧୀରେ ଗାଢ଼ ହୁଏ । ସେତେବେଳେ କବି ତାଙ୍କ ବାନ୍ଧବୀ ପାଖରେ ଜନ୍ମଜନ୍ମାନ୍ତରର ଦାବୀ ବାଢ଼ି ବସନ୍ତି । କେବେ ଚେତନାର ସୀମା ପାରହୋଇ ଚନ୍ଦ୍ରାହତ କେଉଁ ଅଗ୍ନାଗ୍ନି ବନସ୍ତଭିତରେ ନଦରେ ଶୋଇ ପଡ଼ିବା ଅବସ୍ଥାରେ (psycheର ରୂପକଳ୍ପ, ପ୍ରାଚୀନ ପରୀ-କାହାଣୀର ରାଜାଝିଅ ରୂପକଳ୍ପ ମଧ୍ୟ) କବି ତାଙ୍କର ବାନ୍ଧବୀକୁ ଆବିଷ୍କାର କରନ୍ତି । କେବେ ପୁଣି ରାତି କୋଡ଼ ହୋଇ ମିଶିଯାଏ

ବିରାଟ ଶୂନ୍ୟରେ । କବି ଆଶା କରନ୍ତି ତାଙ୍କ ବାହୁଡ଼ା ପଥିଟିଏ ପୁରୁଣା ରେଲ ଲାଇନ୍‌ବାଟେରେ ପୁଣି ଫେରିବ, ପୁଣି ଦେଖାହେବ ନିଘୁଞ୍ଚିଆ ବାଲିଚରରେ, କେଉଁ ଅସ୍ତନକ୍ଷ ତଳେ ଅବା କେଉଁ ବିବର୍ଣ୍ଣ ସଂଧ୍ୟାରେ । କବିତାର ଶେଷାଂଶରେ ରୂଢ଼ ବାସ୍ତବତା ଓ ପ୍ରେମର ଅପମୃତ୍ୟୁଚେତନା 'ଆଜିରାତି ଥଣ୍ଡାହୁଏ, ଜାକି ହୋଇ ଆସେ ବିର୍‌ବଲପୁ'ର ପ୍ରକୃତି ବର୍ଣ୍ଣନା ଭିତରେ ଅଭିବ୍ୟକ୍ତ ।

ବିଜନ ବାଲିଚରର ଉଷର ଅନୁର୍ବରତା, କବି-ଜୀବନର ଯାନ୍ତ୍ରିକ ନିଃସଙ୍ଗତାର, ଅବକ୍ଷେପଚେତନାର ଓ ମୂଲ୍ୟବୋଧର ବିପର୍ଯ୍ୟୟ-ବୋଧର ସର୍ବୋପରି ଆତ୍ମଦହନର ପ୍ରତୀକ । 'ନିର୍ଜନ', 'ନିଘଞ୍ଚ', 'ନିଶବ୍ଦ' 'ଜନଶୂନ୍ୟ' 'ବିଜନ' 'ବିବର୍ଣ୍ଣ' 'ନିଷ୍ପନ୍ଦ ବିରାଟ ଶୂନ୍ୟ' 'ବିବର୍ଣ୍ଣ' ଓ 'ନିଘୁଞ୍ଚିଆ' ଶବ୍ଦର ବାରମ୍ବାର ବ୍ୟବହାର କବିଙ୍କର ମାନସିକ ଏକାକୀତ୍ୱ ଓ ନିର୍ଜ୍ଜନତାକୁ ହିଁ ପ୍ରକାଶ କରୁଛି । ପ୍ରକୃତି ବର୍ଣ୍ଣନା ତେଣୁ ନ୍ୟୁରୋଟିକ୍ କବିବ୍ୟକ୍ତିତ୍ୱ ସହିତ ଅବିଚ୍ଛିନ୍ନ ଓ ଅନ୍ତରଙ୍ଗ ସାଯୁଜ୍ୟ ଲାଭକରିଛି । ଫ୍ରଏଡ୍‌ଙ୍କ ମତରେ ଏ ଯୁଗରେ ପ୍ରତି ମଣିଷ ନିଉରୋଟିକ୍ ହେବାକୁ ବାଧ୍ୟ । କବି ନିଜେ ଯାହା, ପ୍ରକୃତିକୁ ସେ ସେହିପରି ଦେଖନ୍ତି । ମନୋଜ ଦାସଙ୍କ ଗଳ୍ପ ଗୁଡ଼ିକରେ ଥିବା ଜହ୍ନ ଓ ରାତିର ବର୍ଣ୍ଣନାପରି ଏକାବେଳେକେ କାବ୍ୟ ପୁରୁଷର ଆତ୍ମା-ସ୍ୱରୂପର ପରିପୂରକ ଓ ପ୍ରତୀକ ହୋଇଛି ପ୍ରକୃତି । ଅନ୍ୟ ଭାଷାରେ କହିଲେ କାବ୍ୟ ପୁରୁଷ ଏଠାରେ ପ୍ରକୃତିକୁ ମନୋ-ନୟନ କରିଛି ନିଜ ଜୀବନ-ସଂପର୍କିତ କରିବା ପାଇଁ । ମୃତ୍ୟୁ ଓ କ୍ଷୟିଷ୍ଣୁତା ସଚେତନ କବି ନିଜ ସମୟର ନାୟକ । ନିଜ ପ୍ରେମିକାକୁ ସଂପୂର୍ଣ୍ଣ ଏକନିଷ୍ଠ ଓ ତୃପ୍ତ ହୋଇ ପାଇବା ପାଇଁ ତାଙ୍କର ଏକ ପ୍ରକାର ଆବେଶନ (ଅବସେସନ୍) ଅଛି । 'ତୁମରି ହାତରେ ମୋର

ଓଠ ଶିବ ଛନ୍ଦାଛନ୍ଦ ହୋଇ' ଯେଉଁଭଳି ତୀବ୍ର ଇନ୍ଦ୍ରିୟପରାୟଣତା (ସେନ୍‌ସୁଆଲିଟି) ସୂଚାଏ, ଠିକ୍ ସେହିଭଳି ଏକ 'ଆତ୍ମ-ପିଡ଼ନ ରତି' (ମାଷକିଜମ)କୁ ମଧ୍ୟ ସୂଚାଇଥାଏ । ସମଗ୍ର କବିତାରେ କବିର ବ୍ୟକ୍ତିତ୍ୱ ଖୁବ୍ ବେଶୀ ପୌରୁଷବ୍ୟଂଜକ ନୁହେଁ; ବରଂ ନାରୀବାର ସାନ୍ନିଧ୍ୟାଭିଳାଷୀ । କବିର ଅବଚେତନରେ କାହିଁତ ଯୌନ କ୍ଷୁଧା ଓ ବିଳାସ-ପ୍ରବୃତ୍ତି (ଡେଥ୍ ଇନ୍‌ଷ୍ଟିଂକଟ୍) ଯେତେବେଳେ କୌଣସି ବାହ୍ୟ ଧ୍ୱଂସାତ୍ମକ କ୍ରିୟାରେ ପ୍ରକାଶିତ ନ ହୋଇ ବ୍ୟକ୍ତିଠାରେ ସଞ୍ଚିତ ହୋଇ ରହିଯାଇଥାଏ ତାହାହିଁ କାମ-ସ୍ଥାନ (erogenous) ଜନିତ ଆତ୍ମ-ପୀଡ଼ନ-ରତି-ମନୋବୃତ୍ତି ବ୍ୟକ୍ତିଠାରେ ସୃଷ୍ଟି କରିଥାଏ (ଫ୍ରଏଡ୍) । ପ୍ରେମିକ-ବ୍ୟକ୍ତିତ୍ୱର ଏ ସକଳ ଚେତନା ଓ ଅଭିଜ୍ଞତାରେ 'ପ୍ରିୟବାନ୍ଧବୀ' କବିତା ଗମ୍ଭୀର ।

ଏହି କବିତାର ଆଙ୍ଗିକ ବା ଗଠନ ସୌଷ୍ଠବ ହେଉଛି ତାଙ୍କର 'କାଳପୁରୁଷ' ଓ ଅନ୍ୟାନ୍ୟ ସମସ୍ତ କବିତାର ଆଙ୍ଗିକ (ଫର୍ମ) । ଏ ଦୃଷ୍ଟିରୁ ଇଲିଅଟ୍‌ଙ୍କୁ ହଜମ କରିବାରେ ସେ ପୁରସ୍କୃତ । ଆଧୁନିକ କବି ଏପରି ଏକ ଆଙ୍ଗିକ ବ୍ୟବହାର କରେ ଯାହା ତା'ର ନିଜଭାଷାରେ ଗଚ୍ଛିତ ସବୁ ପ୍ରକାର ଛନ୍ଦଗୁଡ଼ିକୁ ନିୟନ୍ତ୍ରଣ କରିପାରେ,- ଅଥଚ ଆଙ୍ଗିକର ବ୍ୟବହାରରେ ସେ ନିଜର କଥିତଭାଷା, ଉପଭାଷା (ଡାଏଲେକ୍ଟ) ପ୍ରଭୃତିର ସ୍ୱାଧୀନତା ଅକ୍ଷୁର୍ଣ୍ଣ ରଖିପାରେ । ଏକଦା ସବୁଜ କବିତାର ଓ ତତ୍ପରବର୍ତ୍ତୀ ମାନସିଂହ, ଗୋଡ଼ନାୟକ ଓ ସଚ୍ଚି ରାଉତରାୟଙ୍କର ପୁରୁଣା ଆଙ୍ଗିକର ମନୋଟୋନି ଓ ମନ୍ଥରତାକୁ ପରିତ୍ୟକରି, ପୁରୁଣା ଓ ନୂଆ—ଉଭୟ ପ୍ରକାର ରୂପକଳ୍ପର ସୁସଂଯତ ପ୍ରୟୋଗ କରିବାରେ ସେ ସଫଳ । ଏହା ସହିତ କବିତାରେ ଗତିଶୀଳତା ଅକ୍ଷୁର୍ଣ୍ଣରଖି ବସ୍ତୁତଃ ନିଜର ଭାବ ଅନୁଯାୟୀ ଉପମା, ଉପମେୟ, ପ୍ରତୀକ ଓ ଖଣ୍ଡବାକ୍ୟ ଗୁଡ଼ିକର ଅନୁପାତିକ ଭାରସାମ୍ୟ ସୁରକ୍ଷା କରିବାରେ 'ପ୍ରିୟବାନ୍ଧବୀ' ସମେତ ସମସ୍ତ କବିତାରେ ସେ ସିଦ୍ଧହସ୍ତ ।

ପଚାଶ ଓ ଷାଠିଏ ଦଶକ ରେ ଗୁରୁବାବୁଙ୍କ ରଚନାମାନ ପ୍ରକାଶ ପାଇବା ଆରମ୍ଭ କରେ । ବିଶେଷକରି 'ନୂତନ କବିତା'ର ପ୍ରକାଶ ପରେ ପରେ ସମସାମୟିକ ବହୁ ବୟଃ କନିଷ୍ଠ କବି ତାଙ୍କୁ ଆଙ୍ଗିକ-ପ୍ରୟୋଗରେ ଅନୁସରଣ କରିଛନ୍ତି । ପ୍ରବନ୍ଧର

କଳେବରବୃଦ୍ଧି ଆଶଙ୍କାରେ ଏଠାରେ ସଂକ୍ଷେପରେ ପ୍ରଦତ୍ତ ସଚ୍ଚିଦାନନ୍ଦଙ୍କ ଦୃଷ୍ଟାନ୍ତ ଭାବରେ ଉଲ୍ଲେଖ କରାଯାଉଛି ।

ସଂକୀର୍ଣ୍ଣ ଗୋଧୂଳି ବାଟ ଅବା ଶୂନ୍ୟ ଝରଣା ମଝିରେ
ଆମେ ଦୁହେଁ ଏକା ଏକା ହାତଧରି ଚାଲୁଥିଲୁ ନଦୀ ମୁହାଁରେ
ପରସ୍ପରେ ଅନାଇଲୁ ପରସ୍ପରେ ଅବା ଦେଖିଥିଲୁ
ସିଂହଳ ନାରୀର ପୁଷ୍ପ ଭେଷନାର ଫଳ ବଗିଚାରେ । ୧୬°
କିଛି ବାଟ ଗଲା ପରେ କସ୍ତୁରୀ କହିଲା
ଆଉ ଚାଲି ହେବ ନାହିଁ ନାଲି ଗୋଡ଼ ଶଗଡ଼ ଗୁଳାରେ
ଏଇଠି ବସିବା ଚାଲ ଆକାଶର ନୀଳ ଛାଇ ତଳେ
ଦେଖିବା ରାତ୍ରିର ଦୃଶ୍ୟ ବସି ବସି ଏ କାଠ ପୋଲରେ ।

('ଶବସଙ୍ଗମ'- ମହାନଦୀ ପବ୍ଲିକେଶନସ୍, କଟକ ୧୯୭୯)

'ପ୍ରିୟବାନ୍ଧବୀ'କବିତାର ମୁଖ୍ୟଭାବ ହେଉଛି ପ୍ରେମିକମଣିଷ ପାଇଁ ପ୍ରିୟ ମଣିଷର ଏକ ଚିରନ୍ତନ ଅଭାବବୋଧ, ବ୍ୟର୍ଥତାବୋଧ ଓ ତଜ୍ଜନିତ ଆତ୍ମ-ଦହନ । ନିଜର ପ୍ରେମନିକଟରେ କାବ୍ୟ-ପୁରୁଷର ସକଳ ବିଶ୍ୱସ୍ତତା ଓ ଆନ୍ତରିକତା ସତ୍ତ୍ୱେ ପ୍ରେମିକା ଚିରଦିନ ଅନୁପସ୍ଥିତା ଓ 'ଭଡ଼ିଥିନ' । ଏକଦା ତା'ସହିତ ଘଟିଥିବା ଘନ-ସନ୍ନିବିଷ୍ଟ ଅଭିଜ୍ଞତା ଅନ୍ତରର ସମୟ ହାତରେ ଭ୍ରଷ୍ଟ, ଖଣ୍ଡିତ ଓ ଛିନ୍ନବିଚ୍ଛିନ୍ନ । ତାହାହିଁ ସଚେତନ କାବ୍ୟ-ପୁରୁଷର ମାନସିକ ସଙ୍କଟ । ସମୟ ଦ୍ୱାରା ସବୁପ୍ରେମ ଓ ପ୍ରେମିକା ଅପହୃତ । କେବଳ 'ପ୍ରିୟବାନ୍ଧବୀ' କବିତାନୁହେଁ । କାରଣ କେଶ, ଶାଢ଼ୀ, ସୌନ୍ଦର୍ଯ୍ୟ ଓ ବୟସଥିବା ପ୍ରେମିକାଆକୃତିର 'ନାୟିକା' କେବଳ ମଣିଷରପ୍ରିୟବାନ୍ଧବୀ ହୋଇପାରନ୍ତିନାହିଁ—ଭଲ ସମୟ-ନିରପେକ୍ଷ କବିତାମଧ୍ୟ ରସଗ୍ରାହୀ ବୁଦ୍ଧିଜୀବୀଙ୍କର ପଠନ ଲିପ୍ସାର ପ୍ରିୟବାନ୍ଧବୀ ହୋଇପାରେ ।

●

ପ୍ରମୋଦ କୁମାର ମହାନ୍ତି

# ସିଢୁଆ

—ଏକ—

ଧାନହିଡ଼ି ନଈ ସିନା ଏଠି ନାହିଁ, ଏଠି ଶୀର୍ଣ୍ଣ ସିଢୁଆ ନଈରେ
ରାତ ଘୋର ଅନ୍ଧାରରେ ତାରା ଭାସେ ବିବର୍ଣ୍ଣ ଶ୍ରୀହୀନ
ଏଠି ବାଲି ଅପନ୍ତରା ଡେଇଁ ଘାସ ଘୁଙ୍ଗୁଚିଆ ବଣ
ରାତିରେ ପବନ ଆସେ ଖୋଜି ଖୋଜି ଝରକାରେ ଆଖିପତା
ଡିବିର ଆଲୁଅ ।

ଏଠି ମୁଗ କୋଳଥର କଅଁଶିରେ ଜହ୍ନ ଆସେ ନଟୁଟିଆ ଅତଡ଼ା ଉପରେ
ଏଠିବି ଅନ୍ଧାର ଆସେ ଘାଶ ହୋଇ କୁହୁଡ଼ିରେ
ଏଠିବି ବାଦୁଡ଼ି ଡେଣା କାକର ଝାଡ଼ି ଯାଏ ତୋଟାରେ ନିଶୁନ
ରାତି ଚୁପ୍ ଚୁପ ହେଲେ
ଏଠିବି ଏ ମାଟି କେତେ ଭଲ ପାଏ ମଣିଷକୁ ଅଗଣିତ କାମନାର
କେତେ ଆଶା ନିରାଶା ଭିତରେ ।

ମୋ ଦେହର କାମ୍ୟ କେତେ ପ୍ରେୟ ମୋର ଏ ମନର ମୋ
ଆତ୍ମାର କେତେ ଯେ ପିପାସା
ଏହି ଘାସ କାକର ଓ ଏହି ଧାନ ମହକରେ, ଜାହ୍ନୁକର
ଏ ଡାକରେ ହୁଏତ ବା ରହିଚି ନିହିତ
ତେଣୁ ଯେବେ ସନ୍ଧ୍ୟା ବେଳେ ଆଲୁଅ ନରମ ହୁଏ ଗ୍ରୁଇ
ଜମେ ଶୁଖିଲା ଛଣରେ
ମୋର କ୍ଳାନ୍ତ ସତ୍ତା ଘେରି ସମସ୍ତ ହଠାତ ଆସେ ଅଜ୍ଞାତ
ଏ ଅନ୍ଧାରର ପ୍ରଶ୍ନ ଆଉ ବହୁତ ସନ୍ଦେହ ।

## —ଭୁଇ—

ଧାନସିଡ଼ି ନଇଁ ଯିବା ଏଠି ମନ୍ଦ୍ରେ ମନ୍ଦ୍ରେ ଶିତଳ ଧାର
ତାହା କେତେ ଖଣ୍ଡ ଆଉ ମେଘ ଖଣ୍ଡେ ମୋ ଆଖିର ଦିଗ୍‌ବଳୟ ଘେର
ମୋର କ୍ଷୁଦ୍ର ଚେତନାର ଦିଗନ୍ତ ସେପାଖେ ଏହି
ପୃଥିବୀର ଚତୁଃସୀମା ଠର
ଧାନର ମହକ ଯେବେ ଫେରିବ ବା କୁହୁଡ଼ିରେ ଠଣ୍ଡା ଆଜ ପର—

ଯେଦିନ ସତ ମୁଁ ଫେରେ ଛୁଇଁ ଛୁଇଁ ଆମ୍ବଗଛ ବଉଳର ବାସି ଆଉ କଢ଼ !
ଯେଦିନ ମୁଁ ଫେରିବାର ସାର୍ଥକତା କେଉଁଠି ବା,
ନଗୁଡ଼ିଆ ଏ ନଈକୂଳରେ
ନଗୁଡ଼ିଆ ବାଲିଚର ବେଣା ଘାସ ଝୋପରେ ବା ନିରର୍ଥକ
ମୋର ଏହି ଅଜ୍ଞାତ ଅତୀତ
ସେଦିନ ମୁଁ ସତ ଫେରେ - ସାର୍ଥକତା କେଉଁଠି ବା
ଶାନ୍ତ କାହିଁ ମୋର ଏହି ଭଲ ପାଇବାରେ ?

ମୋର ଭଲ ପାଇବାରେ ଏ ବାଟର ଜୀର୍ଣ୍ଣତା ଆଉ ଏହି ପାଦଚିହ୍ନ ସବୁ
ଖାଲି ପାଦ ଚିହ୍ନ କେତେ ଯୋତା ଓ ଖଡ଼ମ୍ ଦାଗ
ସାଇକେଲ ଚକ ଦାଗ କେତେ
ସ୍ଲେଟ, ଡଷ୍ଟ, ଗୋଲ ଗାଲ୍ ମୋଟ ମୋଟ ଯେତେ ସବୁ
ଏ ବାଟରେ ଗଲେ ଖରି ନିଷ ମୋଡ଼ି କାନ୍‌ଭସ୍ ଯୋତା ଦାଗ ରଖି
ଟାଟା ଆଉ କଲିକତା ଗଡ଼ଜାତ ଗୃହକର୍ମ—ତା ପରେ......
ସ୍ମୃତିରକାରୁଣ୍ୟ ଭରି ଏ ବାଟର ବ୍ୟର୍ଥତା ଓ ନିରର୍ଥକ ନିଶବ୍ଦ ବେଦନା !

ଆଜ ଯେବେ ଛୁଇ ଜମେ ସେ ପାଖର ଅଗଡ଼ାରେ - ଏପାଖର
ଧାନଗଛ କଇଁ ପାଖୁଡ଼ାରେ

ଅଲୁଅ ନରମ ହୁଏ ହଳଦୀ ପାଣିରେ ଗୋଳା ଚପର
କଂଚା ଓ ଘାସ ଶଙ୍ଖଚିଲ ତେଣା
ଏହି ସ୍ତୁପ ଅନ୍ଧାରରୁ ସମୟର ସେପାଖରୁ ସେମାନେ
ଆସିବେ କିଣ ଫେରି ଏହି ଧାନ ମହକରେ
ପଶ୍ଚାତ୍‌ଗାମୀ ହେବେ ଆଶା କାମନାର ପଛେ ପଛେ
ଏହି ଭଲ ପାଇବା ଓ ଏ ଗାଁର ନଶ୍ୱର ଦେହକୁ ?

ନଶ୍ୱର ଏ ବେଦନାର ସ୍ତିମିତ ଏ ଅଚ୍ଛନ୍ନତା... ସମୟର ସ୍ଥଗିତ ମୁହୂର୍ତ୍ତ
ଅତୀତର ମୃତ ସବୁ ସେମାନେ ଏ ଦିଗନ୍ତର ସୀମାରୁ ସେପାଖେ
ଆଜି କିଣ ଛୁଟାହୋଇ ଏ ପାଖର ଏହି ବାଲି,
ସିଲୁଆର ଶୀର୍ଣ୍ଣ ଏହି ଦେହର ସୀମାରେ
ସେମାନେ ଶୁଣନ୍ତି କଣ ଜୀବନର ସ୍ପନ୍ଦଧ୍ୱନି ?
ଏଠି ଯେତେ ହାରଜିତ କଳହ ଓ ଟାଉଟର, ହସ ଲୁହ ଈର୍ଷା ଭୟ
ଏହି ଭଲ ପାଇବାର କ୍ଷଣିକ ଏ ସ୍ୱପ୍ନ ଆଉ
ମୃତ୍ୟୁର ଏ ନଶ୍ୱର ସଂସାର ?

ଗଡଜାତ କିଳକଣା ଟାଙ୍ଗା ଆଉ ସରକାରୀ ଟ୍ରକସବୁ... ତାପରେ...
ଜୀବନର କ୍ଳାନ୍ତ ବାଟ ମାଇଲ ମାଇଲ କେତେ ଚଢ଼ାଣି ଉଠାଣି
କୋଣି କୋଣ କେତେ ସନ୍ଦେହ କେତେ କ୍ରୋଧ ଅହଙ୍କାର
କେତେ ଭୟ ଆଶା ଓ ବ୍ୟର୍ଥତା

ପାରହୋଇ ସନ୍ଧ୍ୟାବେଳେ ସେମାନେ ଫେରିଲା ପରି
ମଶାଣିର ଏହି ନାଲି ପଳାଶ ଫୁଲରେ
ସେମାନେ ହଠାତ୍ କଣ ଦେଖି ନାଲି ପ୍ରଜାପତି ଅକସ୍ମାତ୍
ଛୁଟାହୋଇ କେତୋଟି ମୁହୂର୍ତ୍ତ
ଭାବଥିଲେ ଫେରିବାକୁ ଏହି ଧାନ ମହକରେ କଳକଣ୍ଠ ବସନ୍ତରେ
ଆଉ ସିଲୁଆର କୁହୁଡ଼ି ସହିତ ?

ଏହି ଭଲ ପାଇବାର ନିଃସଙ୍ଗ ବେଦନା କି ଏ ପଞ୍ଜରର ଧୂମ୍ର ଦେହରେ
ଆଜି ଆମ୍ର ବଉଳରେ ପବନ ଯଦିବା କୁଏ ଦୂର ନଈ ଅତଡ଼ା ଉପରେ
ଝିଂଟିକା ଯଦିବା ଡାକେ ଆଉ ଅଚହ୍ନା ପକ୍ଷୀର
ନିଃସଙ୍ଗ ଡାକରେ ମିଶେ ପାଚି ଶୋକ ନ୍ୟାସ୍ତ ନଶୋପର
ଆଜି ଯେବେ ପଞ୍ଜରର ନିସ୍ତବ୍ଧ ଦେହରେ ଯାଏ କ୍ଷୟ ହୋଇ
ଏ ଗାଆଁ ରି ଦେହ
ମୁଁ ଫେର ପଚ୍ଛକୁ ଗ୍ଭହେଁ
କେତେ ଖଣ୍ଡ କାକର ଭିତରେ
କ୍ଷୟ ହୋଇ ଯାଇଥିବା କେତେଭଲ ପାଇବାର ହିସାବ
ନିର୍ଜ୍ଜାଣ କେତେ ସନ୍ଧ୍ୟା କେତେ ନିଶବ୍ଦ ସମୟ ।

— ତିନି —

ଧାନସିଡ଼ି ନଈ ସିନା ଏଠି ନାହିଁ ଏଠି ସିଭୂଆର ସୁଅ
ଏଠି ଝଡ଼ର ପବନରେ ଝଡ଼ଯାଏ ଜୀର୍ଣ୍ଣପତ୍ର କେତେ
ଧାନସିଡ଼ି ନଈ ପାଖେ କେଉଁ ଗୁଇ ଗଛ ଆଢୁଆଳେ
ବିଦେଶୀ କବିର ଆତ୍ମା ଆଜ ପୁଣି ଫେରୁଥିବ ହୁଏତ
ଏ ଧାନ ମହକରେ
ପରକ୍ତ୍ୟକ୍ତ କାମନାର ଦେହ ଖୋଜ...ଏହି ଭଲ ପାଇବାର ଦେହ ।

ଏହି ଭଲ ପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା
ଏତେ ରୂପବତୀ
ହଲଦୀ ଓ ଅଲତାର ବିଗ ଗୋଲ ଆକାଶରେ ଫାଲ୍‌ଗୁନର
ଦିନ ଯେବେ ଫେରେ
ପଞ୍ଜରର କୁହୁଡ଼ରେ ଘୋଡ଼ ହୋଇ ଆମ୍ରତୋଟା ଚୁପ୍‌ଚାପ
ନିଛାଟିଆ ଜାମୁକୋଳି ବଣ

ଦ୍ୱିପହରର ଖରାପୁଣି ଜାଳିଦିଏ ଜ୍ୟେଷ୍ଠମାସ ବିଲ, ବାଟ, ଜଙ୍ଗୁଟିଆ ଚଷା
ସେତେବେଳେ ମଣିଷର ରକ୍ତରେ ଜୀବନ୍ତ ହୁଏ ହଠାତ୍ ଅତୀତ ତାର
ପୁଞ୍ଜିଭୂତ କାମନାର ଯୁଗ ଯୁଗ ସ୍ମୃତି କେତେ ଏବଂ ଆଉ
ପୁରୁଷ ପୁରୁଷ

ମୁଁ ତେଣୁ ପଛକୁ ଯେବେ ଫେରି ଚାହେଁ ମୋ ସତ୍ତାର
ବ୍ୟଥା ଓ କ୍ଲାନ୍ତରେ
ମୋର ସବୁ କାମନାର ନୀରବର ପ୍ରେତାତ୍ମା ଯେବେ ପାଲଟେ
ଏ ଧୂସର ପାଉଁଶ
ହୁଏତ ଏ ପୃଥିବୀକୁ ଭଲପାଏ ଦେହ ମୋର ସ୍ମୃତିର
ଏ ବେଦନା ଭିତରେ
ତଥାପି ନ୍ତ୍ରୋ ଗୃହପାଖେ ସମସ୍ତର ହାହାକାର ମୃତ୍ୟୁର
ଏ ଚରମ ଶୂନ୍ୟତା
ଶୂନ୍ୟ ଏହି ବେଦନାର ବିସର୍ଜି ଏ ଗୋଧୂଳିରେ, ଏ ପୃଥିବୀ
ଏ ମ୍ଳାନ ଆକାଶ
ଏହି ବେଦନା ବିସର୍ଜି ଏ ଗୋଧୂଳି, ଏ ପୃଥିବୀ ଏମ୍ଳାନ ଆକାଶ
ଆଉ ମୋର ସାମ୍ନାରେ ଏହି ବାଟ ଦୁପାଖର ଏହି ଧଳା
କ୍ଷୀରକୋଳି ଫୁଲ
ସ୍ମୃତିର ବେଦନା ଅବା ଅତୀତର ଅସ୍ମାରେ ବା ବିଛି
ଆଉ ଆସନ୍ନ ମୃତ୍ୟୁରେ
ପାଏ ପୁଣି ଅର୍ଥନ୍ୟାସ ଆକାଶ ଓ ଏ ପୃଥିବୀ
ଏହି ମୋର ଦେହ ତଳେ ଏହି ଝଡ଼ାପତ୍ର ଆଉ
ଏହିବାଟ ଦୁପାଖର କଂଟା ଆଉ କ୍ଷୀର କୋଳିଫୁଲ ।

ଗୁରୁ ପ୍ରସାଦଙ୍କ 'ସିଡୁଆ' ଏକ ସ୍ମରଣର ଲିରିକ୍। କବିଙ୍କ ଆଗରେ ଏହା ଦୁଇଟି ପୃଥିବୀ ଉନ୍ମୋଚନ କରେ। ଗୋଟିଏ ବାସ୍ତବର, ଅନ୍ୟଟି ସ୍ୱପ୍ନର। ଏ ସ୍ୱପ୍ନର ପୃଥିବୀର ପୁଣି ଦୁଇଟି ଦିଗ। ଗୋଟିଏ ସ୍ମରଣର, ଅନ୍ୟଟି ଭବିଷ୍ୟତ କାମନାର। ଏ ସବୁ ଚେତନା ମଧ୍ୟରେ ଆଉ ଗୋଟିଏ ଚେତନା ଛନ୍ଦାୟିତ। ସେ ଚେତନାଟି ହେଉଛି ସମଗ୍ର ଚେତନା। ତେଣୁ 'ସିଡୁଆ' ଏଇ କାଳ, ଏଇ ସ୍ମରଣର ପ୍ରକାଶ। ବର୍ତ୍ତମାନର ଗୋଟିଏ ମୁହୂର୍ତ୍ତରେ ଅତୀତ ଆଉ ଭବିଷ୍ୟତ ଜରିଆରେ ଏ ଜୀବନର ଏକ ଆବେଗମୟୀ ପ୍ରକାଶ। ତେଣୁ ଏ କବିତାଟିରେ ଗୁରୁପ୍ରସାଦଙ୍କ ଚେତନା ପୂର୍ଣ୍ଣ ବିକାଶ ଲାଭ କରିଛି। ଏ ପ୍ରବନ୍ଧର ଉଦ୍ଦେଶ୍ୟ ଏହି କବିତାକୁ ବିଶ୍ଳେଷଣ କରି ଏହି ଚେତନାକୁ ଅନୁଭବ କରିବା।

କବିତାର ଆରମ୍ଭ ହୁଏ 'ଧାନସିଡି' ନଈର ବର୍ଣ୍ଣନାରୁ। ଧାନସିଡି ନଈର ଉଲ୍ଲେଖ ସଚି ରାଉତଙ୍କୁ ମନେ ପକାଏ। ତାଙ୍କ କବିତାର ଏ ନଈ ସ୍ୱପ୍ନ, ଗ୍ରାମ୍ୟ ଶୋଭାର ଏକ ସ୍ୱପ୍ନିଲ ପରିବେଶ ସୃଷ୍ଟି କରେ। ଏହା ଯେମିତି ଏକ ଛୁଟିର ପୃଥିବୀ। ପ୍ରକୃତିର ଶୋଭାରେ ଭରପୂର ସୁଖ ଆନନ୍ଦର ଶିଖରେ ଝଲମଲ। ମାତ୍ର 'ସିଡୁଆ' ଏମିତି ନଈଟିଏ ନୁହେଁ। ଏହା କବିଙ୍କ ଗାଁର ଅତି ସାଧାରଣ ଶୀର୍ଣ୍ଣ ଧାରଟିଏ। ଏହାର ପାଣିରେ ସ୍ୱପ୍ନର ଇନ୍ଦ୍ରଧନୁ ଫୁଟେ ନାହିଁ। ସଚି ବାବୁଙ୍କ ନଈ ସହିତ ତୁଳନାର ସୂଚନା ଦ୍ୱାରା କବିଙ୍କର ବାସ୍ତବ ଚେତନା ସ୍ପଷ୍ଟ। ଅର୍ଥାତ ଏକ ବାସ୍ତବ ଦୃଷ୍ଟିକୋଣ ନେଇ ସେ 'ସିଡୁଆ'କୁ ଦେଖିଛନ୍ତି। ତାଙ୍କ ମନର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି। ଏ ନଈର ପାଣି 'ବିବର୍ଣ୍ଣ', 'ଶ୍ରୀହୀନ'। ଏହାର 'ଗୁଗୁଚିଆ ବଣ' ପାର ହୋଇ ପବନ ଆସେ ଖୋଜି ଖୋଜି 'ଆଖିପତା ତଳର ଆଲୁଅ'। ଏଠାରେ ସାଧାରଣ ଜୀବନ, ସ୍ୱାଧୀନତା-ପ୍ରକୃତି, ମୁକ୍ତ, କୋଳାହଳ କଥାଗୁଡ଼ା। 'କୁଣ୍ଡିଆ ପତଡ଼ା' ଉପରେ ଜହ୍ନ ଉଠିବା ପୁଣି ବାଦୁଡି, କୁହୁଡି କାକର ସବୁ ବାସ୍ତବ ପରିବେଶ ସୃଷ୍ଟି କରନ୍ତି। ଏହାର ଭିତରେ ମଣିଷର 'ଆଶା ଆଉ ନିରାଶା'।

ଏ ସବୁ ଭିତରେ ମାଟି ଓ ମଣିଷର ସଂପର୍କ। ଆଦମ, ନଦୀ। ଆଉ ଏ ସମ୍ପର୍କର ପ୍ରତୀକ ଏ ସିଢ଼ୁଆ ନଈ।

ଏଇ ପରିବେଶ, ଏଇ ସମ୍ପର୍କ ସହ ଏକ ହୋଇଛି କବିଙ୍କର 'କାମ୍ୟ ଆଉ ପ୍ରେମ୍ପ'। ଏହାର ଭିତରେ ଏକ ହୋଇଛି "ମୋ ଆତ୍ମାର କେତେ ଯେ ପିପାସା"। ଏଇ ଗ୍ରାମ୍ୟ ପରିବେଶ ଭିତରେ କବିଙ୍କ ସତ୍ତା ଏକ ହୋଇଛି। 'ଘାସ, କାକର ଓ ଧାନର ମହକ ଭିତରେ। ଏହି ସମ୍ପର୍କରେ ହିଁ କବି ଚେତନା ଉନ୍ମିଷିତ ମାରେ। ଏ ଚେତନା ହେଉଛି ସମସ୍ତ ଚେତନା। ଏ ଚେତନା ପରିବର୍ତ୍ତନର ଚେତନା। ବୟସ ବଢ଼ି-ଯିବାର ଚେତନା। ଏହି ଚେତନା ତାଙ୍କ ସତ୍ତାକୁ 'କ୍ଲାନ୍ତ' କରେ। ମନରେ ଅନେକ ପ୍ରଶ୍ନ ଜଗାଏ; ଅନେକ 'ସନ୍ଦେହ, ବୁଣେ। ଏହା ହିଁ କବିତାର ପ୍ରଥମ ଭାଗର ଚେତନା। ତେଣୁ 'ସିଢ଼ୁଆ' ଏକ ସାଧାରଣ ନଈ ହେଲେ ହେଁ କବିଙ୍କ ପାଖରେ ଏହା ଏକ ଅସ୍ତିତ୍ୱ। ଯା'ର ସ୍ମୃତି କବିକୁ ନିଜ 'ସତ୍ତା', 'ଆତ୍ମା' ବିଷୟରେ ସଚେତନ କରାଏ। ସିଢ଼ୁଆ ଏଇ କାଳ ଚେତନାର ପ୍ରତୀକ, ଏଇ ସ୍ମୃତିର ପ୍ରତୀକ।

ସମସ୍ତ ସୂଅରେ କବି ଏ ସିଢ଼ୁଆ ପାଖରୁ ବିଚ୍ଛିନ୍ନ। ଆଉ ଋତୁ ଚକ୍ର ପରେ ଯଦି ପୁଣି ସେ ଏ ନଈର କୋଳକୁ କେବେ ଫେରନ୍ତି। ଏ ଫେରିବାର 'ସାର୍ଥକତା' କେଉଁଠିବା ରହିବ। କାରଣ ସେ କ'ଣ କେବେ ସେଇ ପୁରୁଣା ଲୋକ ହୋଇ ସେ ପୁରୁଣା ପୃଥିବୀକୁ ଫେରି ପାରିବେ? ତାଙ୍କ 'ଆତ୍ମାର ଅତୀତ'କୁ ଫେରି ପାଇବେନି। ତାଙ୍କ ପରିଚିତ ପୃଥିବୀ ବଦଳି ଯାଇଥିବ। ତାଙ୍କ ଆଗରେ ଖାଲି ପଡ଼ି ରହିଥିବ ଅସଂଖ୍ୟ ପାଦଚିହ୍ନ, ସାଇକ୍ଲ ଚକ ଦାଗ। ଏ ବର୍ଣ୍ଣନା ଅତି ମର୍ମସ୍ପର୍ଶୀ। ଏହା ଏକାଧାରରେ ସମୟର ପରିବର୍ତ୍ତନ ସୂଚକ ଥିବାବେଳେ ଅନ୍ୟ ଦିଗରେ ଗ୍ରାମ୍ୟ ଜୀବନର ଏକ ମର୍ମସ୍ପର୍ଶୀ ବର୍ଣ୍ଣନା ମିଳେ। ଆମ ଗାଁ ଭିତରକୁ ପଶିଆସେ ଟାଟା, କଲିକତା ଓ ଗଡ଼ଜାତର ଗୃହକର୍ତ୍ତା। 'ସିଢ଼ୁଆ' କୋଳରେ, ତାଙ୍କ

ଅପରବର୍ତ୍ତିନ ଭିତରେ ବିସ୍ମିତ ନାଟକ ଘଟିଯାଏ । ଆଉ କବିଙ୍କ ପାଇଁ ଖାଲି ଛାଡ଼ି ଯାଇଛି "ସ୍ମୃତିର କାରୁଣ୍ୟ ଭରା ଏ ବାଟର ବ୍ୟର୍ଥତା ଓ ନିରର୍ଥକ ନିଶବ୍ଦ ବେଦନା ।" କବିଙ୍କ ମନରେ ପ୍ରଶ୍ନ ଉଠିଛି—

"ଏହି ଛିଟାଇ ଅନ୍ଧାରରୁ ସମୁଦ୍ରର ସେ ପାଖରୁ ସେମାନେ ଆସିବେ
କଣ ଫେରି ଏହି ଧାନ ମହୁଳରେ
ପରିତ୍ୟକ୍ତ ଯେତେ ଆଶା କାମନାରୁ ପଛେ ପଛେ
ଏହି ଭଲ ପାଇବା ଓ ଏ ଗାଁ ଆଁ ର ନିଶବ୍ଦ ଦେହକୁ ?"

ଏଇ ପ୍ରଶ୍ନର ଉତ୍ତର ନିଶ୍ଚିତ ମିଳିବେ ନା । କାରଣ ଅତୀତ କେବେ ଫେରେନା । ଗାଁକୁ ଅତୀତ ଆଉ ଫେରିବନି । କବି ତାଙ୍କର ଅତୀତ ସେ ଦିନକୁ ଆଉ ପାଇବେନି ।

ତେଣୁ କବିତାର ସ୍ପଷ୍ଟ ଲକ୍ଷ୍ୟ ନିଶ୍ଚିତ ଭାବେ ସ୍ମୃତିର ଯନ୍ତ୍ରଣା । କବିଙ୍କ ପ୍ରାଣରେ କିଛି ହଜେଇ ଦେଇଥିବାର ଅବଶୋଷ । ଏ ଯନ୍ତ୍ରଣା ଭଲ ପାଇବାର । ଯାଙ୍କୁ ଭଲ ପାଇଥିଲେ, ଯା' ସାଥିରେ ଖେଳିଥିଲେ ସେ ହଜିଯାଇଛି । ଆଉ ଆସିବେନି । ସେମାନେ ଆଜି ସବୁ ସ୍ମୃତି । କବି ମାନସରେ କାରୁଣ୍ୟର ହିଲ୍ଲୋଳ ସୃଷ୍ଟି କରୁଛନ୍ତି । ସେମାନେ ଆଜି ଆଉ ବର୍ତ୍ତମାନ ନୁହନ୍ତି- 'ଜୀବନର ପ୍ରତିଧ୍ୱନି' ଶୁଣାନ୍ତନି । ସେମାନେ ଆଜି ଅତୀତ । କବିଙ୍କ ପ୍ରାଣରେ ସେଦିନର ପ୍ରତିଧ୍ୱନି ତୋଳନ୍ତି । ଏମାନେ ବର୍ତ୍ତମାନକୁ ହାହାକାରମୟ କରନ୍ତି ।

"ନିଶବ୍ଦ ଏ ବେଦନାର ସ୍ତିମିତ ..ଏ ଅନ୍ଧକାରତା ଦମସ୍ଥିର ସ୍ଥଗିତ ମୁହୂର୍ତ୍ତ
ଅତୀତର ସ୍ମୃତି ସବୁ ସେମାନେ ଏ ଦିନାନ୍ତର ସୀମାର ସେପାଖେ
ଆଜି କଣ ଛିଡ଼ା ହୋଇ ଏ ପାଖର ଏହି ବାଲି, ପିଚ ଆଉ ଶୀର୍ଣ୍ଣ ଏହି
ଦେହର ସୀମାରେ
ସେମାନେ ଶୁଣନ୍ତି କଣ ଜୀବନର ପ୍ରତିଧ୍ୱନି ?

ଅତୀତର ସ୍ମୃତି ମନକୁ ବେଦନା ବିଧୁର କରେ । ଅତୀତର ଅଶ୍ରୁଳ ସ୍ମୃତିରଙ୍ଗ ମନକୁ ଆଚ୍ଛନ୍ନ କରେ । ମାତ୍ର ଏଇଠାରେ ଏ ଚେତନା ସୀମିତ ନୁହେଁ । ଏହା କେବଳ ଆବେଗପ୍ରବଣତା ନୁହେଁ । ଯା, ଆମେ ଗୋଲ୍ଡସ୍ମିଥ୍‌ଙ୍କ 'ଡେଜାର୍ଟେଡ୍ ଭିଲେଜ୍' କବିତାର ଅନେକ ଅଂଶରେ ପାଉଁ । ଏଠାରେ ଗ୍ରେ'ଙ୍କ ଭାବଗମ୍ଭୀର ଆବେଗର ସୂଚନା ମିଳେ । ମାତ୍ର ସବୁଠାରୁ ବଡ କଥା ହେଉଛି ଏହି ଆବେଗପ୍ରବଣତାରେ ନଷ୍ଟ ନ ହୋଇ ଆମକୁ ସମୟର ଚିରନ୍ତନତା ବିଷୟରେ ସୂଚନା ଦିଏ ।

ତେଣୁ ଅତୀତର ସ୍ମୃତି, ଗାଁର ସ୍ମୃତି ବୃହତ୍ତର ପ୍ରଶ୍ନ ତୋଳେ । ଜୀବନର ପାର୍ଥିବ ରୂପ କବିଙ୍କ ଆଗରେ ଦେଖାଦିଏ । ଜୀବନର ହାରଜିତ, ଆଶା, ବ୍ୟର୍ଥତା ପରେ ଯେତେବେଳେ ସେଇ ଅନ୍ତିମ ପ୍ରହର ଯୋଚି ଆସେ ସେତେବେଳେ ଏଇ ଗାଁର ପରିଚିତ ମାଟି, ତାର ସ୍ନେହ, ସୌନ୍ଦର୍ଯ୍ୟ କୋଳରେ ଶେଷ ନିଶ୍ୱାସ ଗ୍ରୁଡ଼ିବା ବେଳେ ଏ ନଈର ଭଲପାଇବା, ଏ କୁହୁଡ଼ି, ଓ ହଳଦି ବସନ୍ତର ରୂପ ଚହଟି ଉଠେ । ମଣିଷ ତା ଗାଁ ସହିତ ଏକ ହୁଏ । ଦୂର ବିଦେଶ ହୁଏତ ପ୍ରତିପତ୍ତି ଦିଏ, ଅର୍ଥଦିଅ ମାତ୍ର ଏ ମମତାକୁ ଛିଡ଼ାଇ ପାରେନା । ମନ ଘୁମୁରି-ଘୁମୁରି ତା'ରି କୋଳକୁ ଫେରି-ଯିବାକୁ ଚାହେଁ । ଯେମିତି ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ ଆକାଶ'ର ନାୟକ ତା ଗାଁକୁ ଫେରି ଯାଇଥିଲା । 'ସିନ୍ଥିଆ' ଏଇ ମମତାର ଛବି । ଆଉ ବହୁଦିନ ପରେ ସମୟର ଏତେ ପରିବର୍ତ୍ତନ ପରେ କି ଏଇ ମାଟିର ଡାକ, ହିଙ୍କାସିର ଡାକ ହୋଇ ଶୁଭେ । କୁହୁଡି ହୋଇ ଆଖିକୁ ଧୂଆଁଳିଆ କରିଦିଏ । କଳଙ୍କି ପରି କାଲି ଗାଁକୁ ମନକୁ ଖାଇଗଲେବି ପଡ଼ୁକୁ ଚିହ୍ନିବାକୁ ପଡ଼େ । ଭଲ ପାଇବାର ହିସାବ ନିକାଶ କରିବାକୁ, ପୁଣି ତାର ଉଷ୍ମତାକୁ ଉପଲବ୍ଧି କରିବାପାଇଁ — ଯେମିତି --

"ମୁଁ ଫେରି ପଡ଼ୁକୁ ଚାହେଁ
କେତେ ଖରା କାକର ଭିତରେ

କ୍ଷୟ ହୋଇ ଯାଇଥିବା କେତେ ଭଲ ପାଇବାର ହିସାବ
ନକାଶ କେତେ ସଭ୍ୟ କେତେ ନିଃଶବ୍ଦ ସମୟ ।"

ଏଠାରେ ସ୍ମୃତି, ପ୍ରକୃତି ଆଉ ସମୟ ସବୁ ଏକାକାର ହୋଇ କବିଙ୍କ ମନକୁ ଘୁରି ଯାଇଛନ୍ତି । ଏହି ମିଶ୍ର ଚେତନା ଯାହା ଜୀବନର ଅନ୍ୟ ଏକ ଛବି ତାର ପ୍ରତୀକ ଏଇ ସିଢ଼ିଆ ।

କବିଙ୍କ ମନ 'ବିଦେଶୀ କବିର ଆତ୍ମା' । ଧାନ ମନ୍ଦିକରେ ସେ ଫେରୁଥିବ ଖୋଜି ଖୋଜି 'କାମନାର ଦେହ', ଭଲ ପାଇବାର ଦେହ' । ଆଉ ଏଇ ଭଲପାଇବା ହିଁ ଜୀବନର ମୂଳ । ସୃଷ୍ଟିର ମୂଳ । ଏହାରି ପାଇଁ ଏ ପୃଥିବୀ 'ଏତେ ରୂପବତୀ' । ପଦ୍ମଫର କୁହୁଡ଼ି ବା ଜ୍ୟୋତ୍ସ୍ନାର ଦ୍ୱିପ୍ରହର ଭିତରେ ହିଁ ସ୍ମୃତି ହୋଇ ଏ ଭଲ ପାଇବା ଜଳାଉଠେ "ପୁଂଜିଭୂତ କାମନାର ଯୁଗ ଯୁଗ ସ୍ମୃତି କେତେ ଏ ଗାଆଁର ପୁରୁଷ ପୁରୁଷ" ।

କବିଙ୍କ ଆଗରେ ତେଣୁ ଦୁଇଟି ପୃଥିବୀ । ଗୋଟିଏ ସ୍ମୃତିର, ଗୋଟିଏ ବାହ୍ୟ ପ୍ରକୃତିର । ସ୍ମୃତିର ପୃଥିବୀ ଭଲପାଇବାର ଜୀବନ୍ତ । ଏହା ଏକ ସମ୍ବନ୍ଧର, କାମନାର ପୃଥିବୀ । ମାତ୍ର ଏହାକୁ ଘେରି ରହିଛି ବାସ୍ତବ ପୃଥିବୀଟିଏ । ଏହା ସମୟର କ୍ରୂର କୋଳରେ କ୍ଷୟିଷ୍ଣୁ । ଏହା ମୃତ୍ୟୁ ଶୀତଳ । ଏହି ସମୟର ଶିକାର ସମସ୍ତେ; କବି ନିଜେ ମଧ୍ୟ । ତଥାପି ଏ କ୍ଷୟ ଭିତରେ ତାଙ୍କୁ ବାନ୍ଧିଥାଇ ରଖିଛି ତାଙ୍କ ଭଲପାଇବା । ତାଙ୍କ 'ସ୍ମୃତିର ବେଦନା' ମାତ୍ର ତାଙ୍କୁ ଘେରି ନାଚୁଛି "ସମୟର ହାହାକାର ମୃତ୍ୟୁର ଏ ଚରମ ଶୂନ୍ୟତା "

ଏହି ଦୁଇ ପୃଥିବୀର ସଂଘର୍ଷ ହେଉଛି ଏ ସିଢ଼ିଆ । ଏକଦିଗରେ ସେ ପ୍ରକୃତିର ସବୁ ସୌନ୍ଦର୍ଯ୍ୟର ଧାତ୍ରୀଟିଏ, ଅନ୍ୟଦିଗରେ ସେ କାଳର ପ୍ରତୀକ । ଉପରୋକ୍ତ ଦୁଇ ପୃଥିବୀ ପୁଣି ମନ ଆଉ ବାହ୍ୟତାର ଚବିତବି

ଯୋଗସୂତ୍ରଟିଏ । ମାତ୍ର ଏହା ଚରମ ପରିଣତି ନୁହେଁ । ଏହା ଅଭିଜ୍ଞତା । ମାତ୍ର ପରିଣତ ପକ୍ୱତା ନୁହେଁ । ଏ ଅଭିଜ୍ଞତା ହୁଏ ତ କବିଙ୍କ ପ୍ରାଣରେ ହତାଶା ଭରିଛି । ଭରିଛି ଶୂନ୍ୟତା, ବିପର୍ଯ୍ୟତା, ତାଙ୍କ ଆଖିରେ ଆକାଶ ବିପର୍ଯ୍ୟ ହୋଇଛି, ମାତ୍ର ଏହି ଶୂନ୍ୟତା ଭିତରେ ଯେମିତି ଆଉ ଗୋଟିଏ ପୃଥିବୀର ଉଦୟ ହେଉଛି । ସ୍ମୃତିଦଗ୍ଧ, ମୃତ୍ୟୁ-ଷଡ଼୍, କ୍ଳାନ୍ତ ଶ୍ରାନ୍ତ ମନ ଏକ ନୂଆ ସତ୍ୟର ସନ୍ଧାନ ପାଏ । ଏ ସମସ୍ତ ଅପରିବର୍ତ୍ତନୀୟ ପରିବର୍ତ୍ତନତା 'ଅର୍ଥନ୍ୟାସ' ପାଏ । ସେଥିପା 'ବାପାଙ୍କର ଧଳା କ୍ଷୀର କୋଳି ଫୁଲ' ନୂଆ ସଙ୍କେତର ସୂଚନା ଦିଏ ଏହା ଯେମିତି ଏହି ପୃଥିବୀ ଭିତରେ ହିଁ ପୃଥିବୀକୁ ଉତ୍ତରି ଯିବାର ଚେତନା ।

"ଶୂନ୍ୟ ଏହି ବେଦନାର ବିପର୍ଯ୍ୟ ଏ ଗୋଧୂଳିରେ, ଏ ପୃଥିବୀ ଏ ମ୍ଳାନ ଆକାଶ
ଆଉ ମୋର ଆତ୍ମାରେ ଏହିବାଟ ବାପାଙ୍କର ଏହି ଧଳା କ୍ଷୀରକୋଳି ଫୁଲ
ସ୍ମୃତିର ବେଦନା ଅବା ଅତୀତର ଆତ୍ମାରେ ବା ଗତ ଆଉ ଆସନ୍ନ ମୃତ୍ୟୁରେ
ପାଏ ପୁଣି ଅର୍ଥନ୍ୟାସ ଆକାଶ ଓ ଏ ପୃଥିବୀ
ଏହି ମୋର ଦେହ ତଳେ ଏହି ଝଡ଼ା ପତ୍ର ଆଉ
ଏହି ବାଟ ବାପାଙ୍କର କଂଟା ଆଉ କ୍ଷୀର କୋଳି ଫୁଲ ।"

ତାଙ୍କ ଦେହ ତଳେ 'ଝଡ଼ା ପତ୍ର' ପୁଣି 'କ୍ଷୀର କୋଳି ଫୁଲ' ଜୀବନ୍ୟାସ ପାଏ । ଅତୀତ, ସ୍ମୃତି କାଳ ଭିତରେ କାଳୋତ୍ତୀର୍ଣ୍ଣ ହୁଏ । ଏହାହିଁ ତୃତୀୟ ପର୍ଯ୍ୟାୟର ଚିନ୍ତାଧାରା । ଏଥିରେ ସମସ୍ତ ସ୍ୱୀକୃତି ପରେ ସବୁକୁ ଟପିଯିବାର ସୂଚନା । ଏକ ମହାସତ୍ୟର ସମ୍ଭାବନା ।

ଏହାହିଁ ମୋଟାମୋଟି କବିତାର ଚିନ୍ତାଧାରା ଏହା ତିନୋଟି ପର୍ଯ୍ୟାୟରେ ପ୍ରକାଶିତ । ଏବଂ ସମସ୍ତ 'ସିଡ଼ୁଆ'କୁ କେନ୍ଦ୍ର କରି । ପ୍ରଥମ ପର୍ଯ୍ୟାୟରେ ଏହା ଏକ ସ୍ମୃତି । ବୈଚିତ୍ର୍ୟହୀନ ସାଧାରଣ ଘଟଣାଟିଏ ମାତ୍ର କବିଙ୍କ ସହ ଏକାନ୍ତ । ଦ୍ୱିତୀୟ ସ୍ତରରେ ଏହା ଅତୀତ ଓ ସ୍ମୃତି, ଏବଂ ତୃତୀୟରେ ଏହା

ଜୀବନାନୁଭୂତିର ନିର୍ଯାସ । ତେଣୁ ଅନୁଭୂତି ଆଉ ଆବେଗର ଯେଉଁ ବିଭିନ୍ନ ସ୍ତର ଏଥିରେ ଉନ୍ମୋଚିତ ହୁଏ ତାହାହିଁ ଏ କବିତାର ବିଶେଷତ୍ୱ । ସିତୁଆ କେବଳ ଅତୀତର ସ୍ମୃତି ନୁହେଁ, ଛବିଳ ପ୍ରକୃତି ନୁହେଁ, ପଳାଇଯିବାର ମାଧ୍ୟମଟିଏ ନୁହେଁ । ଏହା ହୋଇଥିଲେ ଏହା ସାଧାରଣ ସେଂଟିମେଂଟାଲ୍ ରୋମାଂଟିକ କବିତାଟିଏ ହୋଇଥା'ନ୍ତା । ମାତ୍ର ଏ ଅନୁଭୂତ ସହ କାଳ/ମୃତ୍ୟୁ ଚେତନା ଜଡିତ ହୋଇ ଗୋଟିଏ ଚିରନ୍ତନତା ଆଡ଼କୁ ବିକାଶିତ ହେଉଥିବାରୁ ଜୀବନର ଏକ ଗଭୀର ଅର୍ଥ ଭରେ । ଏହା ଜୀବନର ଯନ୍ତ୍ରଣା ଓ ରହସ୍ୟକୁ ପ୍ରକାଶ କରେ ନାହିଁ, ତାର ସାମଗ୍ରୀକତାକୁ ଗ୍ରହଣ କରିଥାଏ । 'ଧାନର ମହକ', 'କୁହୁଡ଼ି, ଅନ୍ଧାର' ଏହି ସବୁର ସୂଚକ । ଏହା ଯେମିତି ମାଟି ଓ ମଣିଷର ସମ୍ବନ୍ଧ । କାଳର କୋଳରେ ଚିର ଷଷ୍ଠି ଶୁ ପୂର୍ଣ୍ଣତା ।

ଏ କବିତା ତେଣୁ ଆବେଗର ବିଭିନ୍ନ ସ୍ତରକୁ ଛୁଇଁଯାଏ । ଏହାର ପ୍ରକୃତି ବର୍ଣ୍ଣନା ଖାଲି ପରିବେଶ ସୃଷ୍ଟି କରେନା । ଏହା ଶ୍ରୋତାର ଚେତନା ସହ ଅଙ୍ଗାଙ୍ଗୀ ହୋଇ ପ୍ରତୀକଧର୍ମୀ ହୋଇଯାଏ । ତିନୋଟି ଭାଗରେ ବିଭକ୍ତ ଏ କବିତା ସ୍ଥିତି, ସ୍ମୃତି ଓ ଶେଷରେ ମୃତ୍ୟୁ / ଓ ଜୀବନର ଏକ ମାର୍ମିକ ସମ୍ପର୍କ ତୋଳେ । ଏହାର ଭିତରେ ଫୁଟି ଉଠେ ନୈରାଶ୍ୟ, ଶୂନ୍ୟତା ଓ ନିଃସଙ୍ଗତାବୋଧ । ଏବଂ ଶେଷରେ ଏ ସବୁର ମିଶ୍ରଣ ଜୀବନର ଗ୍ରହଣ ।

ଏହା ଗୁରୁପ୍ରସାଦଙ୍କ ଏକ ସଫଳ ସୃଷ୍ଟି । କୌଣସି ପଦ୍ଧାଙ୍କ ଅନୁକରଣ ନ କରି ଏହା ତାଙ୍କ ଆବେଗର ବିଶ୍ୱସ୍ତ ଉଦ୍‌ଗିରଣ । ଏହାର ଭାଷା, ଛନ୍ଦ ନିଜସ୍ୱଭାବେ ଗୁରୁପ୍ରସାଦୀୟ, ଏକ ପ୍ରକାରସ୍ୱାଚ୍ଛନ୍ଦ୍ୟ, ଏଇ ସିତୁଆର ଧାର ପରି-ଭାଷାରେ ଅନୁରଣିତ । ଆଧୁନିକ ଜୀବନର ବିଚ୍ଛିନ୍ନତାବୋଧ ଅତି ସୁନ୍ଦର ଭାବେ ଏଥିରେ ପ୍ରତିଧ୍ୱନିତ ହେବା ସଙ୍ଗେ ସଙ୍ଗେ ଏହା ଯେମିତି ଏକ ନିଃସଙ୍ଗ ଅହଂର ଷଷ୍ଠି ଶୁ ପୃଥିବୀକୁ ଗ୍ରହଣ କରିବା । ଯନ୍ତ୍ରଣା, ନିଃସଙ୍ଗତା ଭିତରେ ତିଳ ତିଳ ଜଳି ଶେଷରେ ଏହି ଜ୍ୱଳନକୁ ଜୀବନ ଭାବେ ଗ୍ରହଣ କରି ସତ୍ୟକୁ ଅନୁଭବ ଦିବା ।  ସୌମ୍ୟେନ୍ଦ୍ର ବାରିକ

ପରପୃ 'ଚୈତ୍ର' ହାତ ପାଆନ୍ତାରୁ ଖସିଯାଏ, ରୋମାଂଟିକ୍ ଚେତନାଟି ପାଣି ଓ ମାଟି ଖୋଜି ଖୋଜି ''ବାଲିର ଅନ୍ଧାର ଭିତରେ'' ହଜିଯାଏ । ବିବର୍ଜିତ ଅପନ୍ତରା ବାଲିସ୍ତୂପ ଭିତରେ ''ନୀଳିମା'' ବକ୍ଷବନ୍ଧନୀ ଖୋଲି ଯେମିତି ନାଚଉଠେ । ସମସ୍ତ ପ୍ରତି ସଚେତନ ହୋଇ କବି ଭାବନ୍ତି ବୋଧହୁଏ ''ନୀଳିମା'' ଏକ ସାମୟିକ ସମ୍ମୋହନ, ନିର୍ଜନ ବୈଶାଖୀ ରାସ୍ତାର ଖଣ୍ଡେ ଧଳା ମେଘ ଯାହା ଭିତରେ ଆଶା, ଭ୍ରାନ୍ତି ଓ ଶୂନ୍ୟତାର ଭେଲିକିବାଜି, ସତୀତ୍ୱ, ରାଜନୀତି ଅର୍ଥନୀତି ଓ ଜାଗରଣର ଆୟୋଜନ । ଏ ସମସ୍ତ ଭେଲିକି ସାମ୍ନାରେ ମୁଖାପିନ୍ଧା ନାୟକର ପଦଯାତ୍ରା । ସେ ଦ୍ୱନ୍ଦ୍ୱମୟ ସ୍ଥିତିରେ ସ୍ଥବିର, ଗହଳରାସ୍ତାରେ ପାଦଥାଇ ମଧ୍ୟ ଅଥର୍ବ, ଶକ୍ତି ଥାଇ ମଧ୍ୟ ଉଦାସ ଅଂଧାର ବିଫଳତାର ମହୋତ୍ସବରେ ସେ ହତବାକ୍ । ସବୁ ସମ୍ଭାବନା ଯେମିତି କ୍ଷଣସ୍ଥାୟୀ ଗଜୁରା ସ୍ୱପ୍ନ । ସେ ସ୍ୱପ୍ନରେ ପତ୍ରଝଡ଼ା ମୁହୂର୍ତ୍ତ ମିଳେଇଯାଏ ମହାଶୂନ୍ୟରେ । ପତ୍ରଝଡ଼ାମୁହୂର୍ତ୍ତ ଭିତରେ ଦେହ ଖୋଜିଯାଏ ଦେହ, ପ୍ରାଣ ବି ଖୋଜିଯାଏ ଦେହ । ପ୍ରାଣ ଓ ଦେହର ଅନ୍ୱେଷା ଭିତରେ କ୍ରମଶଃ ଅବକ୍ଷୟ ଘାରିଯାଏ । ସେ ଯେମିତି ବି ଏକ ନାଟକର ଦ୍ରଷ୍ଟା । ଏଂଟିରୋମାଂଟିକ୍ ଚେତନାରେ ଶରବ୍ୟ ହୋଇଲକ୍ଷ୍ୟକରେ ନାୟିକା ମନରେ ଫମ୍ପା ମେଘର ଭେଲିକି । ସେଠି ଶାମୁକା ଭିତରେ ନାହିଁ ସ୍ୱପ୍ନ ବାଲୁଚରର ପାଏ ନାହିଁ ଦୂର ନୀଳ ସାଗରର ସ୍ପର୍ଶ । ଯୌନ ବିକାରଗ୍ରସ୍ତ ସମ୍ଭୋଗ ସାମଗ୍ରୀ ସାମ୍ନାରେ ହତମନା ଓ ପରାସ୍ତ କ୍ଲୀବତ୍ୱର ମର୍ମଗତ ଦେହଜ ଯାତନା । ସେ ଗୋପନୀୟ ବ୍ୟଭିଚାରର ଦ୍ରଷ୍ଟା, ଓ କାମନା ଜର୍ଜରିତ କ୍ଲୀବତ୍ୱର ଏଂଟିହିରୋ ।

ନିହତ ଗୋଧୂଳିରେ କାବ୍ୟନାୟକ ପୁଂଜୀଭୂତ ଅପମାନ ଓ ପ୍ରାଣର ବେଦନାରେ ନଷ୍ଟ ସ୍ଥିତିକୁ ମର୍ମେ ମର୍ମେ ଅନୁଭବ କରିଛନ୍ତି । ଜୀବନର ମୂଲ୍ୟ ତଳେଇ ଯାଇଛି । ସବୁ ଅସାରତା ଭିତରେ ନାୟିକା ପ୍ରତି ତାର ଉଦଗ୍ର ଅଭିଳାଷମୟ ପ୍ରତୀକ୍ଷା ।

ଗୁରୁପ୍ରସାଦଙ୍କ କାବ୍ୟ ପୁରୁଷଟି ବେଦନାଦଗ୍ଧ କାରୁଣ୍ୟର ଝଂକାର,

ସଂକ୍ରଣାଦଗ୍ଧ- ନିଷ୍ପ୍ରଭ-ଉଦାସ ଘେରା ଅବକ୍ଷୟୀ ଜୀବନର ନୀରବ ଦ୍ରଷ୍ଟା । କାବ୍ୟ ନାୟକଙ୍କି ଅନାବୃତ ହେବାଲାଗି କରୁଣ କାମନାରେ ପାଠକର ଦୃଷ୍ଟି ଆକର୍ଷଣ କରେ । ନୂ୍ୟନ ଖିବଯୁକ୍ତ ଯୁଗ ସଂକ୍ରଣାର କ୍ଷୁଧା, ଅନ୍ୱେଷା, ଅସମର୍ଥତାର ଆହ୍ୱାନ ଭିତରେ ନାୟକ ଆମ ଗୃହ ପାଖରେ ଜଡ଼ତା ଘୁଣିଦିଏ । ସ୍ଥିତାବସ୍ଥାର ମୂଲ୍ୟବୋଧ,ବିରୁଦ୍ଧରେ କାବ୍ୟପୁରୁଷର ସ୍ୱର ମ୍ଳାନ ବରଂ ସ୍ଥିତାବସ୍ଥାର ନିଷ୍କରୁଣ ନିର୍ଯ୍ୟାତନା ନିକଟରେ ଦଗ୍ଧନୀୟ ଆତ୍ମସମର୍ପଣ । ସେଇଥି ପାଇଁ ନୈରାଶ୍ୟ ଓ ବେଦନା ବୋଧରେ ସେ ଚିରନ୍ତନ ଶରବ୍ୟ ସଦ୍ଧ ଜୀବନ ସଂଗ୍ରାମରେ କ୍ଷତ ବିକ୍ଷତ କାବ୍ୟନାୟକ ଦୈହିକ କାମନାର ଉଦଗ୍ର ଅଭିଳାଷକୁ ବିଶୃସ୍ତ ଉତ୍ସର୍ଗୀକୃତ ପ୍ରଣୟାନୁଭୂତ ମଧ୍ୟରେ ପରିବ୍ୟାପ୍ତ କରି ପାରିଥାଆନ୍ତି ହୁଏତ ସ୍ଥିତାବସ୍ଥାର ଗଣ୍ଡି ଓ ତତ୍କାଳୀନ ମୂଲ୍ୟବୋଧ ନିକଟରେ ସାଲିସ୍ୱିନ ଜୟଯାତ୍ରାରେ ଦେହରୁ ଅଦେହୀ ହୋଇ ଆମ ପରମ୍ପରାର ଏକ ଭିନ୍ନ ଅବକ୍ଷୟୀ ରୂପ ଗଢ଼ି ତୋଳି ଥାଆନ୍ତି ।

କବି ଗୁରୁପ୍ରସାଦଙ୍କ ପ୍ରତିଭାରୁ ସଦ୍ୟ ପ୍ରସ୍ଫୁଟିତ ଫୁଲଟିଏ ଆଉ ଏବେ ଖୋଜିଲେ ମିଳେନା । ସେ ତେଣାଭଂଗା ଚଢ଼େଇ ସ୍ୱରରୁ ଭିନ୍ନ ଋତୁରେ ଭିନ୍ନସ୍ୱରର ଗୀତଟିଏ ଏ ମାଟିରେ ଖସିଯାଉ ।

**ନିତ୍ୟାନନ୍ଦ ପତି**

# ଚଂପାଫୁଲ

ଚଂପାଫୁଲ ମହକରେ ବାଟ ଭୁଲି ସମୁଦ୍ରର ଢେଉ
ଆସିଥିଲା କୂଳ ଡେଇଁ ଶୁଖିଥିଲା ଉଚ୍ଛଳ ନଦୀ ଛାତି
ପଥର ତରଳିଥିଲା ମଶାଣିର ଭୂତ ପ୍ରେତ ଛାଡ଼ି
ରାଜବତୀ କନ୍ୟା ଲାଗି ଯୋଗୀଥିଲା ମଦନରେ ମାତି ।

ଚଂପାଫୁଲ ହାତେ ଧରି ମନାସିଲା ଯାଦୁକରୀ ଥରେ
ପଥର ପାଲଟି ହେଲା ରାଜପୁଅ, ହାତୀ ସବୁ ହେଲା ମୁକ୍ତାଫୁଲ
ରାଜଝିଅ ବେଣୀଫୁଲ ଖସିଗଲା ଧୂଏ ଧୂଏ ହସି
ଗୋଟିଏ ଫୁଲରେ ପୁଣି ହେଲା କୋଟି ମନ୍ଦିରର ମୂଲ ।

ଚଂପାଫୁଲ ମହକରେ ଏତେ ଯେ ଯେ ଦାରୁଣ କୁହୁକ
ରକ୍ତେ ଧାଏ ନିଆଁ ଲାଗି ଛାତି ଆଉ ନିଶ୍ୱାସରେ ନିଆଁ
ଛାତି ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣ ନିଆଁ, ସବୁ ଯାଏ ଛିନ୍ନ ଭିନ୍ନ ହୋଇ,
ପୃଥିବୀ ଛନ୍ଦରେ ନେଇ ପୋଡ଼ିଯାଏ ଜଳିଯାଏ ସବୁ
ମାଂସଫୁଟେ ଫୁଲ ହୋଇ ମନ ପଡ଼େ ରୋମାଂଚରେ ଶୋଇ ।

ସାଧାରଣ ଅର୍ଥରେ 'ଚଂପାଫୁଲ'କୁ ରୋମାଣ୍ଟିକ୍ ଚେତନା, ସ୍ନାୟୁ ଉତ୍ତେଜକ (ସେନସୁଆଲ) ଶକ୍ତି କିମ୍ବା ଦେହ ବା କାମନାର ପ୍ରତୀକ ରୂପେ ଗ୍ରହଣ କରାଯାଇପାରେ । ଯାହାଦ୍ୱାରା କି 'ଚଂପାଫୁଲ' ଦେହ,ମନ ଆଉ ନିଶ୍ୱାସରେ ନିଆଁ ଜାଳିଦିଏ,ବିଜୁଳିଚମକ ଖେଳାଇ ଦିଏ । ପ୍ରମାଣ ସ୍ୱରୂପ କବିତାଟିର ଶେଷଛଅଧାଡ଼ି ଗ୍ରହଣ କରାଯାଇ ପାରେ ।

କେବଳ ନଶ୍ୱର ମାନବ କାହିଁକି, ଚମ୍ପାଫୁଲ 'ମହକ'ରେ ସମୁଦ୍ର ଢେଉ ବାଟ ଭୁଲି ଆସେ, ଦୃପ୍ତଗର୍ଭା ନଦୀ ଶୁଷ୍କ ହୋଇଯାଏ । ପଥର ତରଳି ଯାଏ, ଯୋଗୀ ନିଜର ମୌଳିକ କାର୍ଯ୍ୟ ପରିତ୍ୟାଗ

କରି ଉଜବଣି କନ୍ୟା ସହ ଉଦ୍ଧଜିଯାଉଥିବା ସନ୍ଦେହ । 'ପଥର'କୁ ଏଠାରେ ଶୁଷ୍କ, ନୀରସ ଯୋଗୀର ହୃଦୟ ବା ପ୍ରବୃତ୍ତି ସହିତ ତୁଳନା କରି ବିଚାର କଲେ ଅର୍ଥ ସ୍ପଷ୍ଟ ହୁଏ । ଅର୍ଥାତ୍ ଯେଉଁ ଯୋଗୀ-ପୁରୁଷର କାମନା ହେଉଛି ଭୂତପ୍ରେତବର୍ଜିତ ସ୍ଥାନରେ ଯୋଗ ସାଧନା, ସେ 'ଚମ୍ପାଫୁଲ ମହକ'ରେ, କାମନାର ତୀବ୍ର ଜ୍ୱାଳାରେ ବା ଦେହ ବାସନାର ବଶବର୍ତ୍ତୀ ହୋଇ (ଉଜବଣିକନ୍ୟା ପାଇଁ) ସବୁ କିଛୁ ପରିତ୍ୟାଗ କରି ଉଦ୍ଧଜିଯିବାରେ ନିମଗ୍ନ ରହିବାକୁ କୁଣ୍ଠା ପ୍ରକାଶ କରେନାହିଁ । ଏ ପ୍ରସଙ୍ଗରେ ଆମର ସ୍ମରଣ ହୁଅନ୍ତି ଜରତ୍କାରୁ ବେଶ୍ୟା ଓ ଋଷ୍ୟଶୃଙ୍ଗ ମୁନି ।

କବିତାର ବିଷୟ ଦୃଷ୍ଟିରୁ ଆମେ ଦେଖୁ ଅନ୍ୟ ଏକ ଲୋକକଥାକୁ, ତାହା ମଧ୍ୟ ଦେହଜ ପ୍ରେମକୁ ନେଇ ଉଦଭାସିତ । ଲୋକକଥାଟି ହେଲା— କାଉଁରୀ କାମାକ୍ଷା ଦେଶର ନାରୀମାନେ ସୁନ୍ଦର ଯୁବକମାନଙ୍କୁ ଯାଦୁବିଦ୍ୟା ବଳରେ ଦିବସରେ 'ମେଣ୍ଢା'ରେ ଏବଂ ରଜନୀରେ 'ଭେଣ୍ଡା'ରେ ରୂପାନ୍ତରିତ କରି ସେମାନଙ୍କ ଦେହଜ କ୍ଷୁଧାକୁ ତୃପ୍ତି କରାଇଥାଆନ୍ତି । ଏହି କଥାକୁ ଗୁରୁପ୍ରସାଦ ପରୋକ୍ଷ-ଭାବେ କହୁଛନ୍ତି ଯେ, ଯାଦୁକରୀ ବା ନାରୀ ସେଇ ଉତ୍ତେଜନାମୟ ବା ଦାହିକା ଶକ୍ତିଟି ପ୍ରୟୋଗକଲେ'ପଥର' ଗଜପୁରରେ ଏବଂ ହାଡ଼ ମଧ୍ୟ ମୁକ୍ତାଫୁଲରେ ପରିଣତହୋଇଯାଏ ! ଆଉ ଏକ ଅତି ପରିଚିତ ଲୋକକଥାନୁସାରେ, ରଜାଝିଅର ବେଣୀରୁ କେବଳ ଗୋଟିଏ ମାତ୍ର 'ଚମ୍ପାଫୁଲ' ଝରିଯାଇ ସ୍ରୋତରେ ଭାସିଗଲେ ତାହା କୋଟି କୋଟି ମଣିଷଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରେ ।

ସୌଗନ୍ଧ ବାରିକ ଏ ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ କହୁଛନ୍ତି ଯେ, ଗୁରୁପ୍ରସାଦ 'ଦେହ ଓ ଅଦେହ'ର କବି, ଏବଂ

'ଚଂପାଫୁଲ୍' ଓ ତାଙ୍କର ଅନ୍ୟ କେତେକ କବିତାରେ ଏହି 'ଦେହ' ଓ ଅତୀତ'ର କଥା କୁହା ଯାଇଛି । କିନ୍ତୁ କବିତାଟିକୁ ଆଉ ଏକ ଦୃଷ୍ଟିକୋଣରୁ ବିଚାର କରାଯାଇ ପାରେ । 'ଚଂପାଫୁଲ' କବି ମହାନ୍ତିଙ୍କ ଦୃଷ୍ଟିରେ ଏକ ଅଜ୍ଞାତ, ଅପହଞ୍ଚ ଓ ଆକର୍ଷଣୀୟ ପଦାର୍ଥ (Lure of the unknown,unreachable or the impo-ssible) । କବିତାର କେତେକ 'ଶବ୍ଦ' ଏବଂ 'ପାଦ'ରୁ ଏହାର ଯଥାର୍ଥତା ଉପଲବ୍ଧି ହୋଇଥାଏ ।

'ଚଂପାଫୁଲ ମହକ' ଏତେ ତୀବ୍ର ଓ ଉତ୍କଟ ଯେ ସମୁଦ୍ରର ଢେଉ କୂଳ ଲଙ୍ଘନ କରି ଆସୁଛି । ସମୁଦ୍ରର ଢେଉ ଦାହିକା ଶକ୍ତିର ଉତ୍ତେଜନାରେ ଯଦି କୂଳ ଲଙ୍ଘନ କରି ଆସିଥାଏ ତେବେ ଏହାର ବ୍ୟାପ୍ତି ଖୁବ୍ ସୀମିତ ଓ କ୍ଷୀଣ କ୍ଲିଷ୍ଟ । ସମୁଦ୍ର ସବୁଶକ୍ତିର ଆଧାର, ଅର୍ଥାତ୍ ସତ୍ୟ ଶିବ ସୁନ୍ଦରର ପ୍ରତୀକ । ଏଣୁ ଦେହଜ ପ୍ରେମର ଆକର୍ଷଣରେ ସେ କଦାପି ଉତ୍ତେଜିତ ହୋଇ ନପାରେ । ସେଇପରି 'ହାଡସବୁ ହେଲା ମୁକ୍ତାଫୁଲ', 'ଦାରୁଣ କୁହୁକ', 'ବିଜୁଳି ଚମକ', 'ବଣ ନିଆଁ', 'ସବୁ ଯାଏ ଛିନ୍ନହୋଇ', 'ପୃଥିବୀର ଗୁଣ୍ଡରେ କେଉଁଠି', 'ପୋଡ଼ି ଯାଏ ଜଳିଯାଏ ସବୁ', 'ମାଂସ ଫୁଟେ ଫୁଲ ହୋଇ, ମନପଡେ ପ୍ରେମା-ସ୍ପଦର ଶୋଇ'— ଶବ୍ଦଗୁଚ୍ଛମାନଙ୍କରୁ କେବଳ ଦାହିକା ଶକ୍ତିର ଉତ୍କଟତା ଯେ ଉପଲବ୍ଧି କରିହୁଏ, ଆଉକିଛି ଅନୁଭୂତ ହୁଏ ନାହିଁ, ଏହା କହିଲେ ଅନ୍ୟାୟ ହେବ । ଯେଉଁ ଶବ୍ଦପୁଞ୍ଜ ପ୍ରଥମସ୍ତରର ଅର୍ଥାଗମରେ ସାହାଯ୍ୟ କରିଥାଆନ୍ତି, ସେଇ ସବୁ ଶବ୍ଦଗୁଡ଼ିକ ଅନେକ ସ୍ଥଳରେ ଅନ୍ୟ ଏକ ସ୍ତରର ଅର୍ଥାଗମର ଅପେକ୍ଷା ମଧ୍ୟ ରଖିପାରିଥାନ୍ତି । 'କୁହୁକ' କହିଲେ ଯାହା ବୁଝାଯାଏ

'ଦାରୁଣ କୁହୁକ' କହିଲେ ତାହାର ଉଦ୍ଦିଷ୍ଟ ସ୍ତରର କଥାହିଁ ସ୍ମରଣକୁ ଆସେ । 'ବିଜୁଳି' କହିଲେ ସାଧାରଣ ଅର୍ଥରେ ଏହା ନିଶ୍ଚୟ 'ଚମକ' ବା 'ଝଲକ' ସୃଷ୍ଟି କରିଥାଏ । କିନ୍ତୁ କବି ମହାନ୍ତି 'ବିଜୁଳି ଚମକ' କହିବାର ତାତ୍ପର୍ଯ୍ୟଟି କ'ଣ ? ଯେଉଁପରି 'ନିଆଁ' କହିଲେ ଯାହା ବୁଝାଯାଏ 'ବଣ ନିଆଁ' କହିଲେ କଣ ଏକା ଅର୍ଥ ଜଣାପଡେ କି ? ଏଇଠାରେ ହିଁ ଜଣେ ସଚେତନ ପାଠକ ଦେହ ଓ ଅଦେହର କଥାଗୁଡ଼ିକ ଅନ୍ୟ ଏକ ଭିନ୍ନ ସ୍ତର କଥା ଚିନ୍ତାକରିଥାଏ । ସେ ସ୍ତରଟି ଉପଲବ୍ଧି କରିହୁଏ ନାହିଁ କି, କଳ୍ପନା ବି କରିହୁଏ ନାହିଁ । ସେ ଭିନ୍ନ ସ୍ତରଟି ହେଉଛି ଅସହଜ (unreachable), ଅଜ୍ଞାତ (unknown) ପାଇଁ ଆକାଙ୍କ୍ଷା । ଯାହାକି ବୁଦ୍ଧି ବୁଝାଇ ହୁଏନାହିଁ । କବିତାଟିର ଅନ୍ତଃସ୍ତଳରେ ଏଇ କଥାଟି ଲୁକ୍କାୟିତ ହୋଇ ରହିଥିବା ଭଳି ଅନୁଭବ କରିହୁଏ ।

କବି ଏପରି ଏକ ଅବସ୍ଥା କଥା ଉପଲବ୍ଧି କରିଛନ୍ତି ଯେଉଁ ଅବସ୍ଥାରେ କି ପୃଥିବୀ ପୃଷ୍ଠରେ ସବୁ କିଛି ପୋଡ଼ି ଜଳି ଧ୍ୱଂସ ହୋଇ ଯାଇଛି । କିନ୍ତୁ ଠିକ୍ ସେଇ ଅବସ୍ଥାରେ ହିଁ ପୋଡ଼ି ଜଳି ଯାଇଥିବା ସବୁ ମଧ୍ୟରୁ ମାଂସ ଫୁଲ ହୋଇ ଫୁଟି ଉଠୁଛି ଏବଂ ମନ ସେମାନଙ୍କରେ ଶୋଇ ପଡୁଛି । ସେଇ ଅଜ୍ଞାତ ବସ୍ତୁ/ପୁରୁଷର ସାନ୍ନିଧ୍ୟ ଆଶାରେ ଦେହରେ ଶୀତ୍କାର ସୃଷ୍ଟି ହେଉଛି ଏବଂ ଦେହ ମନ ପବିତ୍ରତା/ସାଧନାର ଶୀର୍ଷସ୍ତରରେ ପହଞ୍ଚିପାରୁନାହିଁ । ଆଲୋଚକ ଅଧ୍ୟାପକ ବାରିକଙ୍କ ମତରେ 'ଚମ୍ପାଫୁଲ' ଯଦି କେବଳ ଦାହିକା ଶକ୍ତିର କଥା କହୁଥାଏ, ତେବେ ରତିକ୍ଲାନ୍ତ ପୁରୁଷର ମନ ଇନ୍ଦ୍ରିୟ ପରେ ସେମାନଙ୍କରେ ଶୋଇ ପଡ଼ିବ କିପରି ? ଏବଂ ମାଂସ ପୁଣି ଫୁଲ ହୁଅନ୍ତା କିପରି ? ଏଠାରେ ଏତିକି ସ୍ମରଣ କରାଯାଇ-

ତାରେ କବି ମହାନ୍ତି 'ଚମ୍ପାଫୁଲ' କବିତାରେ କେବଳ 'ଦେହ' କିଂବା ଅଦେହର ସ୍ୱପ୍ନ ଦେଖି ନାହାନ୍ତି କି ଦାର୍ଶନିକ ଜଗତର ଜଟିଳତା କଥା କହିବାରେ ତତ୍ପରମୁଖ ହୋଇ ନାହାନ୍ତି । ସେ 'ଚମ୍ପାଫୁଲ'ରେ ଯେଉଁ ଅଜ୍ଞେୟ ବସ୍ତୁ/ପୁରୁଷଙ୍କ ସ୍ପର୍ଶ ଅନୁଭବ କରିଛନ୍ତି ତାହା ସ୍ପର୍ଶକୁ ହୁଏତ ଯଥେଷ୍ଟ ସ୍ପଷ୍ଟ ଭାବରେ ପ୍ରକାଶ କରିପାରିବା ସଂଭବ ନୁହେଁ । ତାଙ୍କ କବିତାର ପରିକଳ୍ପନା ଦେହ ଓ ଅଦେହର ସୀମାକୁ ଅତିକ୍ରମ କରି ଯାଇଛି । ସେଇଥିପାଇଁ କବି ଗୁରୁପ୍ରସାଦ 'ଚମ୍ପାଫୁଲ' କବିତାଟିକୁ 'ସମୁଦ୍ରସ୍ନାନ' କବିତା ସଂକଳନର ପ୍ରାରମ୍ଭରେ ସ୍ଥାନିତ କରିବା ପାଇଁ ଉପଯୁକ୍ତ ମନେ କରିଛନ୍ତି । 'ସମୁଦ୍ର ସ୍ନାନ' ପୁସ୍ତକରେ ଯେଉଁ କାବ୍ୟବୃତ୍ତ ସେ ସିଦ୍ଧାନ୍ତ କରିଛନ୍ତି 'ଚମ୍ପାଫୁଲ' କବିତାରେ ହିଁ ତାହାର ପ୍ରଥମ ପଦଧ୍ୱନି ଶୁଣିବାକୁ ମିଳିଛି । ତାଙ୍କର ପରବର୍ତ୍ତୀ କବିତା 'ସିଡ଼ୁଆ'ରେ ମଧ୍ୟ ଏଇ ସତ୍ୟ ଉପଲବ୍ଧି କରିହୁଏ ।

'ଚମ୍ପାଫୁଲ' କବିତାର ଅନ୍ୟ ଏକ ବିଶେଷତ୍ୱ ହେଉଛି, ଯେଉଁଠାରେ କବିତା ଶେଷ ହୋଇଛି ବୋଲି ପାଠକେ ମନେକରନ୍ତି, ଠିକ୍ ସେଇଠାରୁ ହିଁ କବିତାଟି ଆରମ୍ଭ ହୋଇଛି କହିଲେ ଭୁଲ ହେବ ନାହିଁ । ଏହାକୁ ଏକ ପ୍ରତୀକଧର୍ମୀ କବିତା ରୂପେ ବିବେଚିତ କରିବା ଆବଶ୍ୟକ, ଯଦିଓ କେତେକ ଏହାକୁ ରୂପକଳ୍ପଧର୍ମୀ କବିତାଭାବେ ମଧ୍ୟ ଗ୍ରହଣ କରିଥାନ୍ତି । ●

ବିଜୟ କୁମାର ଚୌଧୁରୀ

# ଗୁରୁପ୍ରସାଦଙ୍କ ସହ ସାକ୍ଷାତକାର

[ ବହୁତ "Do you think it's worth it" ହେଉ, ମୋତେ ଗୋଟାଏ ଇଣ୍ଟରଭ୍ୟୁ କ'ଣ କରିବେ ? ଏଥିରେ କ'ଣ ବା ଏତେ ଦରକାର ?" ଇତ୍ୟାଦି କହି ଆମକୁ ଦୂରେଇ ଦେବାର ଅନେକ ଚେଷ୍ଟା ପରେ ଗୁରୁପ୍ରସାଦ ପରିଶେଷରେ ରାଜି ହୋଇଥିଲେ, 'ମୂଲ୍ୟାୟନ' ତରଫରୁ ଏଇ ସାକ୍ଷାତକାର ପାଇଁ କିଛି ସମୟ ଦେବାକୁ । ଏବଂ ଆମେ ତାଙ୍କୁ ସାକ୍ଷାତ କରିଥିଲୁ ବି. ଜେ. ବି. କଲେଜ, ଭୁବନେଶ୍ୱରରେ ତାଙ୍କର ଅଧ୍ୟକ୍ଷ-ପ୍ରକୋଷ୍ଠରେ ତା ୧୯ । ୯ । ୧୯୭୯ର 'ବିବର୍ଣ୍ଣ ସଂଧ୍ୟା' ଉତ୍ତୀର୍ଣ୍ଣ ହୋଇଗଲା ପରେ ପରେ । ପରିସ୍ଥିତି ଓ ସମୟ— (ସେ ସଂଧ୍ୟାରେ ସାଂଧ୍ୟ କଲେଜରେ ନିର୍ବାଚନ ଅନୁଷ୍ଠିତ ହେଉଥାଏ )—ଏଭଳି ଏକ କାର୍ଯ୍ୟକ୍ରମ ପାଇଁ ଆଦୌ ଅନୁକୂଳ ନ ଥିଲେ ସୁଦ୍ଧା ପ୍ରାୟ ଦୁଇ-ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଧରି ସାକ୍ଷାତକାର ଚାଲିଥିଲା । ଉପର ମହଲାରେ ଭୋଟ ଗଣତି କରାଯାଉଥିବା ପ୍ରକୋଷ୍ଠର ଗୋଟିଏ ଦୁଇଟି ଝରକାର କାଚ କେତେକ ଅତି-ଉତ୍ସାହୀ ଛାତ୍ରଙ୍କ ଦ୍ୱାରା ଭଙ୍ଗାଯିବା ଇତ୍ୟାଦି ଖବର ବିବ୍ରତ ଅଧ୍ୟାପକମାନେ ତାଙ୍କ ନିକଟରେ ପହଞ୍ଚାଉଥାନ୍ତି । ସବୁ ଖବର ଗୁରୁପ୍ରସାଦ ଗ୍ରହଣ କରୁଥାନ୍ତି ସ୍ଥିର, ଅବିଚଳିତ ଭାବରେ ଯେମିତିକି ଇସ୍ପେ ସବୁ ଯାହା ଘଟିଯାଉଛି ଏଥିରେ ବ୍ୟସ୍ତ ବା ବିବ୍ରତ ହେବାର କିଛି ନାହିଁ, ଏ ସବୁ ଅତି ସାଧାରଣ, ଗତାନୁଗତିକ ଘଟଣା । ବଡ଼ ନିର୍ବିକଳ୍ପ ଭାବ ତାଙ୍କର, ସ୍ମିତ ହାସ୍ୟ, ସ୍ଥିର କଥା, ଟେବୁଲ୍‌ର ଗୋଟିଏ କୋଣରେ ଗୋଡ଼ ରଖି ବେଶ୍ ଅବିଚଳିତ ଭାବରେ ବସିଥାନ୍ତି ସେ । ଘନ କଫି ରଙ୍ଗର ସାର୍ଟର ଉପର ବୋତାମ

ଖୋଲା, ଚଉଡ଼ା କପାଳ ଉପରେ ବେଶ୍ ଉଜ୍ଜ୍ୱଳ ଆଖି, ମୁଣ୍ଡର ପତଳା କେଶରାଜି ଅଯତ୍ନ । ପୂର୍ବଦିନ ତାଙ୍କୁ ଆମର ପ୍ରଶ୍ନଗୁଡ଼ିକ ଦିଆଯିବାବେଳେ ସେ ତାକୁ ଚଟାପଟ୍ ପଢ଼ିନେଇ ଟିକିଏ ଗମ୍ଭୀର ହୋଇପାଇ କହିଥିଲେ, ଯେଉଁ ପ୍ରଶ୍ନଗୁଡ଼ିକ ତାଙ୍କର ବ୍ୟକ୍ତିଗତ ଜୀବନର ସୀମାସରହଦ ଭିତରକୁ ପଶିବାକୁ ଉଦ୍ୟତ, ସେଥିରୁ କେତେକର ଉତ୍ତର ସେ ନ ଦେଇ ପାରନ୍ତି । କିନ୍ତୁ ଆମେ ଲକ୍ଷ୍ୟକଲୁଁ, ସାକ୍ଷାତକାର ବେଳକୁ ଏ ପ୍ରକାର ସଂକୋଚ ବା ଦ୍ୱିଧା ତାଙ୍କର ଆଦୌ ନଥିଲା; ଅତି ଖୋଲାଖୋଲି ଭାବରେ ଏକ ଖେଳୁଆଡ଼ର ମନ ନେଇ ସେ ଆମର ସମସ୍ତ ପ୍ରଶ୍ନର ଉତ୍ତର ଦେଇ ଚାଲିଲେ । ସାଧିକଲେକ୍ଟ ଅଫିସର ଜଣେ କର୍ମଚାରୀ କିଛି ଫାଇଲ୍ ଧରି ଆସିବାରୁ ତାଙ୍କୁ ଗୁରୁପ୍ରସାଦ କହିଲେ"—ବାବୁ, ଏଇନେ ଥାଉ, ଦେଖୁନାହାନ୍ତି— I am facing an interview ?" ସାକ୍ଷାତକାର ସମୟରେ ତାଙ୍କର ପରିହାସପ୍ରିୟତା, ସବୁ ଅନୁଭୂତିକୁ ଅବିଚଳିତ ଚିତ୍ତରେ ଗଭୀର୍ଯ୍ୟ କରିନେବାର କ୍ଷମତା, ନିଜ କବିତା ସମ୍ପର୍କରେ ଏକ ଖେଳୁଆଡ଼ସୁଲଭ ( ସ୍ପୋର୍ଟିଭ୍ ) ନିର୍ଲିପ୍ତତା ଆମକୁ ମୁଗ୍ଧକରିଥିଲା । ଏସବୁସତ୍ତ୍ୱେ ତାଙ୍କର ଗଭୀର ବେଦନା ଓ ଏକାକୀତ୍ୱ ଆମଠାରୁ ଲୁଚିପାରି ନଥିଲା, କାରଣ ଦୁଇ ଥର ସେ କହି ଉଠିଥିଲେ—"When I am alone, really alone with no one around me, I have a strange feeling. I don't know if one day I may pull a gun and shoot myself or hang myself from the fan-hook."

ଏଠାରେ ଏହା ବୋଧହୁଏ ପ୍ରାସଙ୍ଗିକ ଓ ଉଲ୍ଲେଖଯୋଗ୍ୟ ଯେ, 'ମଲ୍ଲୀଫୁଲ' ତରଫରୁ ଏ ସାକ୍ଷାତକାର . ତାଙ୍କ କବି-ଜୀବନର ପ୍ରଥମ ଆନୁଷ୍ଠାନିକ ସାକ୍ଷାତକାର । ଗୁରୁପ୍ରସାଦ ଏପର୍ଯ୍ୟନ୍ତ କୋଣସି ପତ୍ର ପତ୍ରିକା, ବେତାର ବା ସେପରି କୌଣସି ସଂସ୍ଥା

ତରଫରୁ ଅନୁଷ୍ଠିତ 'ସାକ୍ଷାତକାର'ରେ ଅଂଶ ଗ୍ରହଣ କରି ନଥିଲେ, ଯଦିଓ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା କବିତା ପାଇଁ ପୁରସ୍କୃତ ଓ ସ୍ୱାଧୀନତୋତ୍ତର ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରତିଭାବାନ୍, ଶକ୍ତିମାନ୍ ଓ ପ୍ରଭାବଶାଳୀ କବିରୂପେ ସ୍ୱୀକୃତ।]

'ମୂଲ୍ୟାୟନ' : ଆପଣଙ୍କ କବିତା ଇଲିୟଟ୍‌ଙ୍କ କବିତା ଦ୍ୱାରା ଅତି ମାତ୍ରାରେ ପ୍ରଭାବିତ ବୋଲି ସମାଲୋଚକମାନଙ୍କର ମତ। ଏହି ପ୍ରଭାବ ଭାବ, ଭାଷା, ପ୍ରକାଶଭଙ୍ଗୀ, ଏପରିକି ରୂପକଳ୍ପ ସ୍ତରରେ ମଧ୍ୟ ସୁସ୍ପଷ୍ଟ। ଇଲିୟଟ୍‌ଙ୍କ 'ପ୍ରୁଫ୍ରକ୍', 'ଦି ଓ୍ୱେଷ୍ଟଲ୍ୟାଣ୍ଡ' ଇତ୍ୟାଦି ଓଡ଼ିଆରେ (ଯଥାକ୍ରମେ) 'ଗୋବର ଗଣେଶ,' 'କାଳପୁରୁଷ' ପାଲଟିଗଲାଭଳି ମନେହୁଏ। ଏ ସମ୍ବନ୍ଧରେ ଆପଣଙ୍କର ନିଜ ମତ କ'ଣ ?

ଗୁରୁପ୍ରସାଦ : ହଁ, ମୁଁ ଲେଖା ଆରମ୍ଭ କଲାବେଳେ ଇଲିୟଟ୍ ସମସ୍ତଙ୍କ ମୁହଁରେ। ତେଣୁ ମୁଁ ବି ତାଙ୍କଦ୍ୱାରା ନିଶ୍ଚୟ ଗଭୀରଭାବେ ପ୍ରଭାବିତ। ଏବଂ 'ଗୋବର ଗଣେଶ' ଉପରେ 'ପ୍ରୁଫ୍ରକ୍'ର ଛାୟା ନିଶ୍ଚିତଭାବେ ପଡ଼ିଛି। କିନ୍ତୁ ସେତିକି। ଅନ୍ୟ କୌଣସି କବିତା ଉପରେ ବୋଧହୁଏ ଇଲିୟଟଙ୍କ ପ୍ରଭାବ ତ ନାହିଁ ! ଆଉ, 'କାଳପୁରୁଷ'। 'କାଳପୁରୁଷ' ଲେଖା ହେବାର ଏକ ମଜା (ମାନେ 'ଇଣ୍ଟରେଷ୍ଟିଂ') ଇତିହାସ ଅଛି। ମୁଁ ସେତେବେଳେ ପୁରୀରେ ଥାଏ। ପୁରୀ ସମୁଦ୍ରକୂଳରେ ଦିନେ ସନ୍ଧ୍ୟାରେ ରାଧାମୋହନ ଗଡ଼ନାୟକ ଓ ମୁଁ ବୁଲୁଥିଲାବେଳେ କ'ଣ ଏମିତି 'ଦି ଓ୍ୱେଷ୍ଟଲ୍ୟାଣ୍ଡ' କଥା ପଡ଼ିଲା। ଗଡ଼ନାୟକ କହିଲେ, "କାଇଁ, ଓଡ଼ିଆରେ ସେଭଳି ଗୋଟେ କବିତା ଲେଖାଯାଇ ପାରୁଛି ?" ମୁଁ ମଜାରେ କହିଲି, "ହେବନାହିଁ କାହିଁକି ? ଚେଷ୍ଟାକରାଗଲେ,

ନିଶ୍ଚୟ ହେବ ।" ସେଦିନ ସମୁଦ୍ର କୂଳରୁ ଫେରି ଘରେ 'ଦି ଓ୍ୱେଷ୍ଟଲାଣ୍ଡ' ଖୋଲି 'କାଳପୁରୁଷ'ର ପ୍ରଥମ ଭାଗ ଲେଖିଲି ଓ ପରଦିନ ପଟ୍ଟନାୟକଙ୍କୁ ଦେଖାଇଲି । ସେ ଭାରି ପସନ୍ଦ କଲେ । ତା'ପରେ ଅଳ୍ପ ଅଳ୍ପ ଲେଖି ବୋଧହୁଏ ବର୍ଷେ ଦି ବର୍ଷରେ 'କାଳପୁରୁଷ' ସାରିଲି ।

'ମୂଲ୍ୟାୟନ' :—ପଟ୍ଟନାୟକ ଆପଣଙ୍କୁ ଏକ ପ୍ରକାର 'ଚ୍ୟାଲେଞ୍ଜ' କରିବାରୁ ଆପଣ 'କାଳପୁରୁଷ' ଲେଖିଲେ, ନା ସେଭଳି ଏକ କବିତା ଲେଖିବା ପାଇଁ ଆପଣଙ୍କର 'ଯୋଜନା' ଥିଲା ?

ଗୁରୁପ୍ରସାଦ :—'ଦି ଓ୍ୱେଷ୍ଟଲାଣ୍ଡ'ଭଳି କବିତାଟିଏ ଓଡ଼ିଆ ଭାଷାରେ ଓଡ଼ିଆ ଜୀବନ ଓ ସଂସ୍କୃତି ପରିପ୍ରେକ୍ଷୀରେ ଲେଖିବା ପାଇଁ ମୁଁ ଅନେକ ଦିନ ଧରି ଚିନ୍ତା କରୁଥିଲି । ପଟ୍ଟନାୟକ ଓ ମୋ' ଭିତରେ ସେଦିନର ସେ କଥାବାର୍ତ୍ତା ମୋ'ର ଏ ଚିନ୍ତାକୁ କାର୍ଯ୍ୟରେ ପରିଣତ କରିବାରେ ସାହାଯ୍ୟ କଲା ।

'ମୂଲ୍ୟାୟନ' :—ଓଡ଼ିଆ ଜୀବନ ଓ ସଂସ୍କୃତିର ପରିପ୍ରେକ୍ଷୀରେ 'ଦି ଓ୍ୱେଷ୍ଟଲାଣ୍ଡ୍' ଭଳି କବିତାଟିଏ ଓଡ଼ିଆରେ ଲେଖିବା ପାଇଁ ବହୁଦିନ ଧରି ଚିନ୍ତା କରୁଥିଲେ ବୋଲି ଆପଣ କହୁଛନ୍ତି । କିନ୍ତୁ, ପାଶ୍ଚାତ୍ୟ ସମାଜର ଯେଉଁ ପ୍ରକାର ଗଭୀର ନୈରାଶ୍ୟ, ବିଡ଼ମ୍ବନା, ମୂଲ୍ୟବୋଧଗତ ଅନିଶ୍ଚିତତା ଇତ୍ୟାଦି ଅନୁଭୂତି 'ଦି ଓ୍ୱେଷ୍ଟଲାଣ୍ଡ୍'ର ପୃଷ୍ଠଭୂମିରେ ରହିଛି, ଆପଣ କଣ କହିବାକୁ ଚାହୁଁଛନ୍ତି ଯେ 'କାଳ-ପୁରୁଷ' ଲେଖାହେବା ସମୟରେ ସାଧାରଣ ଓଡ଼ିଆ ଜୀବନ ଓ ସଂସ୍କୃତିରେ ତଦନୁରୂପ ଅନୁଭୂତିମାନ ଥିଲା ?

ଗୁରୁପ୍ରସାଦ :—ମୁଁ ଭାବୁଛି, ହୁଏତ ଥିଲା—ଯଦିଓ ପାର୍ଥକ୍ୟ ତ କିଛି ନିଶ୍ଚୟ ରହିବ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରର ଓଡ଼ିଆ

ସାମାଜିକ ଜୀବନ ଓ 'ମିଲିଉ'(Milieu) କୁ ତ ମୁଁ 'କାଳପୁରୁଷ'-ରେ ରୂପଦେବାକୁ ଚେଷ୍ଟା କରିଛି । 'ଦ ଓ୍ବେଷ୍ଟଲ୍ୟାଣ୍ଡ'ର ଲଣ୍ଡନବ୍ରିଜ୍ ଉପରେ ସେ 'କ୍ରାଉଡ୍'(Crowd) ଓ 'କାଳପୁରୁଷ' ର ଗ୍ରଣ୍ଡିହାଣ୍ଟ ପୋଲରେ 'ନରନ୍ ଜନତା' ର ଯାତାୟତ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ଅଛି ବୋଲି ମୋର ମନେ ହେଉନାହିଁ । ଅନ୍ତତଃ ମୁଁ ନେତେ ଥର ଲକ୍ଷ୍ୟ କରିଛି ସେମାନଙ୍କ ମୁହଁର ସେ 'କ୍ରାଉଡ' କଥା ମନେ ପକାଇଦେଇଛି । ଏବଂ 'ଦ ଓ୍ବେଷ୍ଟଲ୍ୟାଣ୍ଡ' ର ସେ 'ଟାଇପିଷ୍ଟଗାର୍ଲ' ଘଟଣା ଭଳି ଆମ ଓଡ଼ିଆ ସମାଜରେ 'କାଳପୁରୁଷ'ର ବୋଷବାବୁ ସହରର ବ୍ୟବସାୟୀ ଓ ସେ ଝିଅ (ଯେ କହୁଛି 'ବାପା ଥିଲେ କଟକରେ ବୋଉ ଗଲା ଧାରି ମାଗି') ମଧ୍ୟରେ ଥିବା ସମ୍ପର୍କ ମଧ୍ୟ ଖୁବ୍ ସମ୍ଭବ । ମୁଁ ତ ଭାବୁଛି ଏହା ବୋଧହୁଏ ଆମ ସମାଜର ଗୋଟିଏ ସାଧାରଣ ଘଟଣା ।

'ମୂଲ୍ୟାୟନ' : —ଆପଣ ଅନେକ ଦିନ ଧରି କବିତା ଲେଖୁ-ଥିଲେ ବି, ୧୯୫୫ରେ 'ନୂତନ କବିତା'ର ପ୍ରକାଶ ଓ ତା'ର 'ଭୂମିକା'ରେ ଇଲିୟଟ ଓ ଅନ୍ୟାନ୍ୟ ଇଂରାଜୀ ସମାଲୋଚକଙ୍କ କାବ୍ୟ-ତତ୍ତ୍ୱ ପରିପ୍ରେକ୍ଷୀରେ ଉକ୍ତ କବିତା ସଂକଳନର ମୂଲ୍ୟାୟନ ଯଶୋଦା ମୋହନ ମହାନ୍ତି କରିସାରିବା ପରେ ଆପଣଙ୍କ କବିତା ବେଶୀ ଆଲୋଚିତ ହେଲା । କେହି କେହି ମନେ କରନ୍ତି ଯେ 'ନୂତନ କବିତା'ର ସେ 'ଭୂମିକା' ଦ୍ୱାରା ହିଁ ଆପଣ କବିଭାବରେ ପ୍ରତିଷ୍ଠା ଲାଭକରିଲେ । ଏ ସଂପର୍କରେ ଆପଣଙ୍କ ମତାମତ ? ଆଉ, ଆପଣଙ୍କ କବିତା ଓ ଭାନୁଜୀ ରାଓଙ୍କ କବିତା ମଧ୍ୟରେ ଏତେ ପାର୍ଥକ୍ୟ ସତ୍ତ୍ୱେ ଦୁହିଁଙ୍କି ଏକାଠି କରି ପ୍ରକାଶ କରିବାର ଲକ୍ଷ୍ୟ କ'ଣ ?

ଗୁରୁପ୍ରସାଦ : ସଚ୍ଚି ବାବୁ କଲେଜରେ ମୋ'ଠାରୁ ବୋଧ-ହୁଏ ପାଞ୍ଚ ଛ' ବର୍ଷ ଜୁନିଅର । ମୋର ପ୍ରକାଶିତ କେତେକ କବିତା ସେ ପଢ଼ିଥିଲେ । ତା'ପରେ ପୁରୀରେ ତାଙ୍କ ସହିତ ମୋର ଦେଖା ହେଲା ଓ ମୋର କବିତା ପ୍ରତି ତାଙ୍କର ଗଭୀର ଅନୁରାଗ ବିଷୟ ସେ କହିଲେ । ସେହି ଦିନଠାରୁ ଆମର ସମ୍ପର୍କ ଅତି ଗଭୀର ବନ୍ଧୁତାରେ ପରିଣତ ହୋଇଛି । He has great love for me• ଶୁଣିଛି,'ନୂତନ କବିତା'ର ସେ 'ଭୂମିକା' ଛଡ଼ା ମୋର ଅନ୍ୟ କବିତା-ଗୁଡ଼ିକ ସମ୍ପର୍କରେ ମଧ୍ୟ ସେ ଲେଖିଛନ୍ତି । 'କାଳପୁରୁଷ' ଉପରେ ବି ତାଙ୍କର କୁଆଡ଼େ ଖୁବ୍ ବଡ଼ ପ୍ରବନ୍ଧଟିଏ ଗୋଟିଏ ପୂଜା ପତ୍ରିକାରେ ବାହାରି ଥିଲା ଏଇ ଦୁ' ତିନି ବର୍ଷ ତଳେ··· । ଭାନୁଜୀ ବାବୁଙ୍କ କବିତା ଓ ମୋ' କବିତା ଅନେକ ଫରକ୍ ; ତଥାପି, ସେଗୁଡ଼ିକ ବି 'ନୂତନ', ମାନେ new and refreshing............... ସେଥିଯୋଗୁଁ ବୋଧେ ସଚ୍ଚି ବାବୁ ଆମ ଦୁହିଁଙ୍କ କବିତାକୁ ବାଛିଥିଲେ ।

'ମୂଲ୍ୟାୟନ' : ଆପଣଙ୍କ କବିତାକୁ ଡ଼ଃ ମାନସିଂହ ଅତି କଠୋର ଓ ଅନୁଦାର ଭାବରେ ସମାଲୋଚନା କରିଥିଲେ । ଆପଣଙ୍କ କବିତାକୁ ଯେତେ ନୁହେଁ, ସଚ୍ଚିଦା ମୋହନ ମହାନ୍ତିଙ୍କ 'ଭୂମିକା'କୁ ତା'ଠାରୁ ଅନେକ ବେଶୀ । କ'ଣ ତା'ର କାରଣ ହୋଇପାରେ ? ଅସହିଷ୍ଣୁତା ? ଉପଯୁକ୍ତ ରୁଚିର ଅଭାବ ? ନା, ଆଉ କିଛି ?

ଗୁରୁପ୍ରସାଦ : ଠିକ୍ କ'ଣ କହିପାରିବି ନାହିଁ । ଡ଼ଃ ମାନସିଂହଙ୍କ ପ୍ରତି ମୋର ସବୁବେଳେ ଗଭୀର ସମ୍ମାନ । ମୁଁ ଭାବୁଛି ତାଙ୍କର ମଧ୍ୟ ମୋ' ପ୍ରତି କିଛି ଶ୍ରଦ୍ଧା ନିଶ୍ଚୟ ଥିଲା, କାରଣ ଆମେ ଯେତେ ଥର ପରସ୍ପରକୁ ଭେଟିଛୁ, ଖୁବ୍ ଭଲ ଭାବରେ କଥାବାର୍ତ୍ତା

ହୋଇଛନ୍ତି । ମୋର ଯେତେଦୂର ମନେପଡ଼ୁଛି, ଥରେ ବୋଧହୁଏ ମୋର ଗୋଟିଏ କବିତାକୁ ମୋ' ମୁହଁରେ ପ୍ରଶଂସା ବି କରିଥିଲେ । ଟିଗୋଟେ ଅତି ଇଣ୍ଟରେଷ୍ଟିଂ ଘଟଣା କହିବି । ମୁଁ ପ୍ରତିରକ୍ଷା ବିଭାଗରେ ଥିଲାବେଳେ ମୋର ଜଣେ ଉଚ୍ଚପଦସ୍ଥ ହାକିମ Col. Jog ଦିନେ ହଠାତ୍ ପଚାରିଲେ, "G. P., I'm told you write excellent poetry, I didn't know that." ମୁଁ କହିଲି, "But, Sir, who told you that I commit that kind of sin ?" ସେଇଠୁଁ ସେ ନିକଟରେ ଡ଼ଃ ମାନସିଂହଙ୍କ ସହ ଏକା କମ୍ପାର୍ଟମେଣ୍ଟରେ ଯାତ୍ରା କରିଥିବା କଥା କହି କହିଲେ : 'Dr. Mansingh spoke very highly of your poetry' ଆମ ଦୁହିଁଙ୍କ ମଧ୍ୟରେ ବ୍ୟକ୍ତିଗତ ସ୍ତରରେ କିଛି ଅନ୍ତରଙ୍ଗତା ବା ଅସୂୟା ଆଦୌ ନ ଥିଲା ।

'ମୂଲ୍ୟାୟନ' : ଆମେ ଭାବୁଛୁଁ, ଆପଣ ଓ ତାଙ୍କ ଭିତରେ 'ସେନ୍‌ସିବିଲିଟି'ର ମୌଳିକ ପାର୍ଥକ୍ୟ ଯୋଗୁଁ ଏପରି ଘଟିଲା ।

ଗୁରୁପ୍ରସାଦ : ହଁ, ତା' ହୋଇପାରେ ।

'ମୂଲ୍ୟାୟନ' : ଇଲିୟଟଙ୍କ ଛଡ଼ା ଅନ୍ୟକେଉଁ କବି ଆପଣଙ୍କ ମନରେ ରେଖାପାତ କରିଛନ୍ତି, ବା ଅନ୍ୟ କୌଣସି କବିଙ୍କ ଲେଖା-ଦ୍ୱାରା ଆପଣ ପ୍ରଭାବିତ ହୋଇଛନ୍ତି ?

ଗୁରୁପ୍ରସାଦ : ଭଂଜଙ୍କ କାବ୍ୟରୁ କିଛି ପଢ଼ିଛି । ତା' ପରେ, ରାଧାନାଥ, ସଚ୍ଚିରାଉତରାୟ, ବିଶେଷ କରି ଜଗନ୍ନାଥ ଦାଶଙ୍କ 'ଭାଗବତ'କୁ ବି ଅନେକ ଥର ପଢ଼ିଛି , 'ଭାଗବତ'ର ସେଇ ଯେଉଁ Cosmic Themes, and that timeless quality about its poetry ମୋତେ ଗଭୀର ଭାବେ ପ୍ରଭାବିତ କରିଛି ।

ସଚ୍ଚିରାଉତରାୟଙ୍କ କବିତାକୁ ମନଦେଇ ପଢ଼ିଛି।···ଅନେକ ସେଥିରୁ ଭଲ ଲାଗିଛି। ମୁଁ ରିଆକ୍‌ଟ (React କରିଛି। ସେତେବେଳେ ସଚ୍ଚିବାବୁଙ୍କ 'ଅଲକାସାନ୍ୟାଲ' କବିତାଟି ଭାରି ନାଁ କରିଥାଏ। ଆମର ସେଇ ବର୍ଦ୍ଧମାନ କୋଠି ସେତେବେଳେ ସେଠି 'ନୟାଗଡ଼ ମେସ୍' ବୋଲି ଗୋଟିଏ ମେସ୍ ଥାଏ। ଜଣେ ଭଦ୍ରମହିଳା ନୋଇଜାନେଟ ଚାଲି ଗଲେ ଆମଭିତରୁ ଜଣେ କିଏ ତାଙ୍କ ଉପରେ ହଠାତ୍ କମେଣ୍ଟ କରିଦେଲେ 'ଏଇ ଯାଉଛି ଅଲକା ସାନ୍ୟାଲ୍'। ସେଇ 'କମେଣ୍ଟ' ଟି କାହିଁକି କେଜାଣି ମୋ' ମନରେ ରହିଯାଇଥିଲା। ଏଘଟଣାର କିଛି ବର୍ଷ ପରେ ମୁଁ ମୋର 'ଅଲକା ସାନ୍ୟାଲ୍ କବିତାଟି ଲେଖିଲି।

'ମଲ୍ୟାଣ୍ଡନ': 'ସମୁଦ୍ରସ୍ନାନ' ସଙ୍କଳନରେ ଥିବା କବିତା ଗୁଡ଼ିକ ତ ଆପଣ ଆଉ କିଛି କେବେ ଲେଖିଥିଲେ କି?

ଗୁରୁପ୍ରସାଦ: ହଁ, ବଦ୍‌ଲେୟାର୍‌ଙ୍କ ପ୍ରାୟ ପଚିଶ ହେବ କବିତା ମୁଁ ଓଡ଼ିଆରେ ଅନୁବାଦ କରିଥିଲି। ଗୋଟିଏ କଲା ଖାତାରେ ସେଗୁଡ଼ିକ ଓ ମୋ' ନିଜର ଆଉକେତେକ ଅସମ୍ପୂର୍ଣ୍ଣ କବିତା ଥିଲା। ବଦଲେୟାରଙ୍କ କବିତା ଖୁବ ଭଲ ଲାଗିଥିଲା, ତେଣୁ ଅନୁବାଦ କରିଥିଲି, କିନ୍ତୁ ବଦ୍‌ଲେୟାର୍‌ଙ୍କ ଦ୍ୱାରା ମୁଁ ପ୍ରଭାବିତ ହୋଇଛି ବୋଲି ଭାବୁନାହିଁ। କିନ୍ତୁ ମୁଁ ଯେତେବେଳେ ପ୍ରତିରକ୍ଷା ବିଭାଗରେ ଯୋଗ ଦେଲି, ସେ ଗୁଡ଼ିକରେ ବହୁତ ବଦଳି ତ···ସେଇ ବଦଳି ବେଳେ ମୋର ସେ କଲାଖାତାଟି କେଉଁଠି ହଜିଗଲା·······I have always deeply felt that loss···। ସେକ୍‌ସପୀୟରଙ୍କ ସନେଟ୍‌ରୁ କେତୋଟି ଅନୁବାଦ କରିବାକୁ ଚେଷ୍ଟା କରିଥିଲି କିନ୍ତୁ ତାଙ୍କର କେତୋଟି 'ଫ୍ରେଜ୍'(Phrase) ପାଖରେ

ବାରମ୍ବାର ଅଟକିଲା - ସେ ଗୁଡ଼ିକୁ ସେମିତି ଅନୁବାଦ କରି ହେଲା-ନାହିଁ । ଏଇ ଧରନ୍ତୁ 'Love's increase'... କ'ଣ ହବ ତା'ର ଓଡ଼ିଆ ଅନୁବାଦ ? ତେଣୁ ସେ ଚେଷ୍ଟା ଛାଡ଼ିଲି । ଅନେକ ଦିନ ପରେ ଏବେ 'ପ୍ରଜ୍ଞା' ଓ 'ସ୍ମୃତିରେଖା'ର [illegible] କ'ଣ ସମ୍ପାଦକଙ୍କ ତରେ ଆଉ ଗୋଟେ ଯୋଡ଼ି କବିତା କ'ଣ ବାହାରିଛି । ଦେଖିଥିବେ... ବାସ୍ ସେତିକି ତ ପ୍ରକାଶିତ ।

'ମୂଲ୍ୟାୟନ': ଆପଣ ଆଜିକାଲି ଆଉ କବିତା ଲେଖୁନାହାନ୍ତି କାହିଁକି ?

ଗୁରୁପ୍ରସାଦ: ଅନେକ ଦିନ ତଳେ ସର୍ବେଶ୍ୱର ବାବୁଙ୍କ* ଏଭଳି ଏକ ପ୍ରଶ୍ନର ଉତ୍ତରରେ ଯାହା କହିଥିଲି, ଠିକ୍ ସେହା ଆପଣମାନଙ୍କୁ କହିବାକୁ ନାହିଁ, ଭାବୁଛି । କ'ଣ ଦିନେ ଏମିତି ସର୍ବେଶ୍ୱର ବାବୁ ମୋତେ ପଚାରି ଦେଲେ--'କଣ କବି ! ଯୁଆ ଭିତରେ ଆଜି କ'ଣ ସବୁ କବିତା ଲେଖା ହୋଇଛି ?' ହଠାତେ ମୁଁ ଉତ୍ତର ଦେଲି 'କବିତା ! Why that adolescent Pursuit ?' ଟିକିଏ ରହିଯାଇ ସେ ପୁଣି ପଚାରିଲେ, 'ତା' ହେଲେ କବି, କ'ଣ ସବୁ ତମ ମତରେ adult pursuit ? ମୁଁ କହିଲି : 'Why women, money, etc, etc. I think this was too much for him...... ତେବେ, ମୁଁ ଲେଖା ବନ୍ଦ କରି ନାହିଁ । ପ୍ରତିରକ୍ଷା ବିଭାଗରେ ଯୋଗ ଦେଲା ପରେ ଆଉ ଅବସର ମିଳିଲା ନାହିଁ । ଲେଖିବା ପ୍ରାୟ ବନ୍ଦ ହୋଇଗଲା ।

---

* ସଂପ୍ରତି ଶ୍ରୀଯୁକ୍ତ ସର୍ବେଶ୍ୱର ଦାସ ଖଲ୍ଲିକୋଟ କଲେଜ, ବ୍ରହ୍ମପୁରରେ ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ – ସଂପାଦକ ।

ଏବେ ଏମିତି କୁଆଡ଼େ ବାହାରକୁ ଗଲାବେଳେ ହଠାତ୍ କାର୍ ଭିତରେ କବିତା ଧାଡ଼ିଏ ଦି' ଧାଡ଼ି ମନକୁ ଆସେ । ଡାଇରୀରେ ତାକୁ ଲେଖି ରଖେ । ଗୋଟିଏ ଗୋଟିଏ କବିତା ଲେଖିବାକୁ ଅନେକ ଥରେ ବର୍ଷେ ବା ଅଧିକ ସମୟ ଲାଗିଛି । ଏଇନେ ଅବଶ୍ୟ ତୁମକୁ ଦେବାପାଇଁ କିଛି finished poems ନାହିଁ । ଭାବୁଛି, Retire କଲା ପରେ କିଛି ଲେଖି ପାରିବ । ଯାହାସବୁ ଏବେ-ତେବେଣେ ପଡ଼ିଛି ତାକୁ final shape ଦେବ । ଏଇନେ ସମୟ ହେଉ ନାହିଁ ।

'ମୂଲ୍ୟାୟନ' : 'ଦି ୱେଷ୍ଟ ଲ୍ୟାଣ୍ଡ' ପରେ ଇଲିଅଟଙ୍କ କାବ୍ୟ- ବିବର୍ତ୍ତନର ପରିଣତି 'ଏରିଏଲ ପୋଏମସ' ଓ 'ଫୋର କ୍ୱାର୍ଟେଟସ୍' । ଆପଣଙ୍କ 'କାଳପୁରୁଷ' ପରବର୍ତ୍ତୀ କବିତା ( ଯଥା 'ଅନ୍ଧାର ଉଦ୍ୟାନ', 'ପିଲୁଆ') ଗୁଡ଼ିକୁ ଅଳ୍ପ ବେଶୀ ହେଲେ 'ଏରିଏଲ୍ ପୋଏମ୍ସ' କୁହାଯାଇ ପାରେ । କିନ୍ତୁ ଆପଣଙ୍କର 'ଫୋର-କ୍ୱାର୍ଟେଟ୍ସ' କାହିଁ ?

ଗୁରୁପ୍ରସାଦ : ସେ ଭଳି ଏକ କବିତା ଲେଖିବା ପାଇଁ ଯେଉଁ ପ୍ରକାର faith ଦରକାର, ତା' ମୋର ଆସୁନାହିଁ । I think I am basically a good person........ କିନ୍ତୁ ବେଳେ ବେଳେ ଏମିତି ଗୋଟେ feeling ଆସୁଛି......ଉଃ... The agony is terrible......., When I am alone, really alone, with no one around me, I have a strange feeling. I don't know if one day I may pull a gun and shoot myself or hang myself from the fan-hook." [ ଏକା ନିଶ୍ୱାସକେ ଏତିକ କହିସାରିଲା ପରେ ଏକ ତୀବ୍ର ବେଦନାବୋଧ ଗୁରୁପ୍ରସାଦଙ୍କ

ମୁଖମଣ୍ଡଳକୁ ଆଚ୍ଛନ୍ନ କରି ସାରିଥିଲା । ଦୁଇ ତିନି ମିନଟ୍ ଯାଏଁ ଆଉ କିଛି ପ୍ରଶ୍ନ ନ ପଚାରି ଆମେ ତାଙ୍କୁ ସମୟ ଦେଲୁ ନିଜକୁ ପୁଣି ଆତ୍ମସ୍ଥ କରି ନେବାକୁ । ]

'ମୂଲ୍ୟାୟନ' :—ଆପଣଙ୍କ ନିଜ କବିତାମାନଙ୍କରୁ କେଉଁ କବିତାଟି ବା କବିତା ଗୁଡ଼ିକ ଆପଣଙ୍କର ବେଶୀ ପ୍ରିୟ ?

ଗୁରୁପ୍ରସାଦ '— ଏବେ ଥରେ ଥରେ ଯେବେ ସେଗୁଡ଼ିକୁ ପଢ଼ିବାକୁ ଚେଷ୍ଟା କରେ I find I can really go back to only two poems – 'ଅନ୍ଧକୂପରୁ ଉତ୍ତର' ଓ 'ପିଚ୍ଛୁଆ' । ଏକ ପ୍ରକାର larger experience ମୁଁ ପାଏ ସେ ଦୁଇଟିରୁ । I think I have tried to do something very original there. ଅନ୍ୟ କବିତା ଗୁଡ଼ିକ ବିଶେଷତଃ, the early poems କେମିତି adolescent ଲାଗନ୍ତି । 'କାଳପୁରୁଷ' କଥା ତ କହୁଛି, patches of it are still good. ଏବେ ବି ଭଲ ଲାଗେ… But I cannot go back to the entire poem any more. 'କାଳପୁରୁଷ'କୁ ସେତେବେଳେ ଯେଉଁମାନେ କହୁଥିଲେ 'It's a Cuttacki edition' of 'The Waste Land' ସେମାନେ ବିଶେଷ କିଛି ଭୁଲ କହୁ ନ ଥିଲେ ।

'ମୂଲ୍ୟାୟନ' : ଆପଣଙ୍କ କବିତା ସଂକଳନକୁ 'ସମୁଦ୍ରସ୍ନାନ' ବୋଲି କାହିଁକି ନାଁ ଦେଇଛନ୍ତି, ଯଦିଓ ସେଇ ନାମରେ ଆପଣଙ୍କର କୌଣସି କବିତା ସେ ସଂକଳନରେ ନାହିଁ ?

ଗୁରୁପ୍ରସାଦ : ଅନେକ ଦିନ ଧରି ମୁଁ ପୁରୀରେ ଥିଲି । ପୁରୀରେ ଥିଲା ବେଳେ ହିଁ ସେଥିରୁ ଅଧିକାଂଶ କବିତା ଲେଖି

ଯାଇଥିଲି । ତାପରେ ବି ସମୁଦ୍ର purification ର ପ୍ରତୀକ...Contact with the Cosmic from which we have come and to which we ultimately return ଏ ସବୁ ବିଶ୍ୱାସ ବି ଅଛି । ନାଁ ଟି actually ସଚ୍ଚିଦାନନ୍ଦ ବାବୁ suggest କରିଥିଲେ । ଅବଶ୍ୟ ମୁଁ ସେଇ ଭଳି ଗୋଟିଏ କ'ଣ ନାଁ କଥା ଭାବୁଥିଲି ।

'ମୂଲ୍ୟାୟନ' :—'ସମୁଦ୍ରସ୍ନାନ' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିବା ଖବର ଆପଣ ଯେତେବେଳେ ପ୍ରଥମ ଶୁଣିଲେ, ଆପଣଙ୍କୁ କେମିତି ଲାଗିଲା ?

ଗୁରୁପ୍ରସାଦ :—ସାର୍ ( ଆଇ ମିନ୍, ପ୍ରଫେସର ବି: ଦାସ ) ମୋତେ ଟେଲିଫୋନ୍ କରି ପ୍ରଥମେ ଖବରଟି ଦେଇଥିଲେ । Naturally, I just felt happy, but I must say I was more interested in the money part of it.

'ମୂଲ୍ୟାୟନ' :—ଆଗରୁ ଶୁଣିଥିଲୁଁ, ଏବଂ ଏ ସାକ୍ଷାତକାର ସମୟରେ ବି ଲକ୍ଷ୍ୟ କରୁଛୁଁ, ନିଜ କବିତା ସଂପର୍କରେ ଆପଣ ଭୀଷଣ ନିର୍ଲିପ୍ତ ଓ ଉଦାସୀନ । ଏ ନିର୍ଲିପ୍ତତା ଗୋଟାଏ 'ପୋଜ୍' ନା ସେଥିରେ ଆନ୍ତରିକତା ଅଛି ?

ଗୁରୁପ୍ରସାଦ :—ନା, 'ପୋଜ୍' ଆଦୌ ନୁହେଁ । କାରଣ I have seen the wide world, and living is surely more interesting than poetry. କେତେବେଳେ ମନ ହୋଇଥିଲା, ଏମିତି କିଛି କବିତା ଲେଖି ଦେଇଥିଲି, ତା' ନେଇ ମୁଣ୍ଡ ଖେଳେଇବା କ'ଣ ଦରକାର ? ମୁଁ କହୁନାହିଁ, Poetry does not matter, but it matters for the initiated. ଜଣେ ଡାକ୍ତର, ଇଂଜିନିୟର, ଜଣେ soldier, how does he need to bother about poetry ? Lots of people go on living without reading a line of poetry.

'ମୂଲ୍ୟାୟନ' :—ମନେ ହୁଏ; ଆପଣଙ୍କ କବିତାରେ ଅନୁଭୂତିର କ୍ୟାନ୍‌ଭାସ୍ ବେଶ୍ ଗ୍ରେଟ୍, ଗଭୀର ହେଲେ ମଧ୍ୟ ପରିସର ସଂକୀର୍ଣ୍ଣ ଓ ବୈଚିତ୍ର୍ୟହୀନ । ଆପଣଙ୍କ 'ଉତ୍ତରପୁରାଣ' ଓ 'ଭୋକାବ୍ୟୁଲାରୀ'ର ପରିସର ମଧ୍ୟ ସେତେ ବିସ୍ତୃତ ନୁହେଁ, ଅନେକ ସମୟରେ ଗୋଟିଏ ଶବ୍ଦକୁ ଲଗ୍ ଲଗ୍ ଦୁଇଥର ପ୍ରୟୋଗ କରି ଆପଣ ଏକ ପ୍ରକାର ଛନ୍ଦ ସୃଷ୍ଟି କରିବାକୁ ଚେଷ୍ଟା କରିଥାନ୍ତି; ଏଇ ଧରନ୍ତୁ "ଅଳ୍ପ ଅଳ୍ପ

ଦଗି ଦଗି, ('କାଳପୁରୁଷ') ବା 'ଗ୍ଲାଇ ଯାଏ ଛପି ଛପି' ('ପ୍ରିୟ ବାନ୍ଧବୀ') ଏ ସବୁ ସତ୍ତ୍ୱେ ଆପଣଙ୍କ କବିତାର ଆବେଦନ ପ୍ରଚୁର । କିପରି ?

ଗୁରୁପ୍ରସାଦ : ତା'ର ବିଗ୍ଭର ଆପଣମାନେ କରିବେ । ମୁଁ ଖାଲି ଏତିକି କହିବି, ମୋର limited vocabulary ସତ୍ତ୍ୱେ ଲେଖିଲାବେଳେ ମୋର କେବେ ଅସୁବିଧା ହୋଇନାହିଁ, ମୁଁ ଯାହା ପ୍ରକାଶ କରିବାକୁ ଚାହିଁଛି, ପାରିଛି । ଆଉ, ଯେଉଁ ଛନ୍ଦ ମୁଁ ସୃଷ୍ଟି କରିବାକୁ 'ଚେଷ୍ଟା' କରିଛି ବୋଲି ଆପଣ କହୁଛନ୍ତି, ମୁଁ କୌଣସି ପ୍ରକାର 'ଚେଷ୍ଟା' କରିନାହିଁ । It has come naturally to me.

'ମୂଲ୍ୟାୟନ' : ନିର୍ଜନତା ଓ କ୍ଷୟ ସମ୍ପର୍କିତ ରୂପକଳ୍ପ ସୃଷ୍ଟି କରିବାରେ ଆପଣ ସିଦ୍ଧହସ୍ତ ମନେ ହୁଅନ୍ତି । କିଛି ମନ୍ତବ୍ୟ ଦେବେ ?

ଗୁରୁପ୍ରସାଦ : ମୋ କବିତାର ନିର୍ଜନତା might have something to do with my own sense of loneliness. ଏବଂ sense of decay ବିଷୟରେ କହିବି, it perhaps comes from my awareness of Time, the cosmic perspective, man's place in the universe etc. etc.

'ମୂଲ୍ୟାୟନ' : ଆପଣଙ୍କ କବିତାର ଆବେଦନ ଯେ ପ୍ରଚୁର, ତା'ର ଅନ୍ତତଃ ଗୋଟିଏ ପ୍ରମାଣ ହେଉଛି ଯେ ସାତ ଆଠ ବର୍ଷ ଭିତରେ 'ସମୁଦ୍ର ସ୍ନାନ'ର ଚତୁର୍ଥ ସଂସ୍କରଣ ହୋଇ ସାରିଲାଣି ।

ଗୁରୁପ୍ରସାଦ : 'ସମୁଦ୍ର ସ୍ନାନ'ର ଚତୁର୍ଥ ସଂସ୍କରଣ ହୋଇ ସାରିଲାଣି ?

'ମୂଲ୍ୟାୟନ' : ଆପଣ ଜାଣି ନାହାନ୍ତି ?

ଗୁରୁପ୍ରସାଦ : ଜାଣି ନାହିଁ, କି ଜାଣିବାକୁ ଚାହେଁ ନାହିଁ । ମୋ' ପ୍ରକାଶକ ଯେତେବେଳେ ମୋ କବିତା ଗୁଡ଼ିକ ଏକ ସଙ୍କଳନ କରି ପ୍ରକାଶ କରିବାକୁ ଇଚ୍ଛାକରି ମୋତେ ସେ ପ୍ରସ୍ତାବ ଦେଲେ, ମୁଁ

ଆଶ୍ଚର୍ଯ୍ୟ ହୋଇଗଲି । କବିତା, ପୁଣି ମୋ' କବିତାର ସଂକଳନ ! କିନ୍ତୁ ସେ ଜିଦ୍ କରିବାରୁ ମ୍ୟାନୁସ୍କ୍ରିପ୍ଟଟି ତାଙ୍କୁ ଦେଇ କହିଲି : "ଯଦି ଛାପୁଁଛନ୍ତି, ତା' ହେଲେ ଛାପନ୍ତୁ । କିନ୍ତୁ ଲାଭ କ୍ଷତି କଥା ମୋତେ କିଛି କହିବେ ନାହିଁ । କ୍ଷତି ତ ଆପଣଙ୍କର, ଲାଭ ହେଲେ ବି ଆପଣଙ୍କର ।"

'ମୂଲ୍ୟାୟନ' : ଏତେ କମ୍ କବିତା ଲେଖି ଖୁବ୍ କମ୍ କବି ଆପଣଙ୍କ ଭଳି ଏତେ ପ୍ରସିଦ୍ଧ ହୋଇଛନ୍ତି । କାରଣ କ'ଣ ହୋଇପାରେ ?

ଗୁରୁପ୍ରସାଦ : ମୋ' ସମ୍ପର୍କରେ ତ ଅନେକ Scandal. ମୁଁ ଭାବୁଛି ସେଗୁଡ଼ିକ ଯୋଗୁଁ ଅନେକ ପାଠକ ମୋ' କବିତା ପ୍ରତି ଆକୃଷ୍ଟ ହୋଇଥିବେ । [ଏତକ ଗୁରୁପ୍ରସାଦ ଅତି ଲଘୁ ସ୍ୱରରେ କହିଥିଲେ ।]

'ମୂଲ୍ୟାୟନ' : ଆମେ ଭାବୁଛୁଁ, ଓଡ଼ିଆ କବିତାରେ ଏକ ପ୍ରକାର ଶୂନ୍ୟସ୍ଥାନ (ମାନେ Vacuum) ଥିଲା ଯାହାକି ଆପଣଙ୍କ କବିତା ବୋଧହୁଏ ପୂରଣ କରିପାରିଲା ।

ଗୁରୁପ୍ରସାଦ : ତା' ବି ହୋଇପାରେ । ❁

—ଶରତ ଚନ୍ଦ୍ର ଶତପଥୀ, ପ୍ରଫୁଲ୍ଲ କୁମାର ଜଗଦେବ

---

।। 'ସମୁଦ୍ରସ୍ନାନ' ପରବର୍ତ୍ତୀ କବିତା ।।

---

## ବାବା ପାଇଁ ଗୋଟିଏ କବିତା

ଏ ଶୀତର ଏ କୁହୁଡ଼ି ତୋର ବୁଢ଼ୀ ମାଆ ପରି
ତା' ଆଖିର ଫିକା ପେଜ, ତା ମୁଣ୍ଡର ଧଳା ଝୋଟ ପରି
ଆଜ ତାର ବୃହାଣୀର ଝାପ୍ସା ଆକାଶ ସବୁ
ମରିଥିବା ପୃଥିବୀର ମୃତ୍ୟୁର ଯନ୍ତ୍ରଣା ନେଇ
ପାହାଡ଼ରେ ଏ ଶୀତର ଛାଉ ଛାଉ ଧଳା ଦାଗ ପରି ।

ସେ ଆସେ ସେମିତି ଟିକ୍ ଧଳା ଶାଳ ଘୋଡ଼ି ହୋଇ
ବାଡ଼ି ଧରି ନଇଁ ନଇଁ
ତା' ପଛରେ କେତେ ନକ୍ସ, କେତେ ଢେଉ, କେତେ ସୁଅ
କେତେ ବାଟ ଅପନ୍ତରା ଶୋଷ ଆଉ କେତେ ଥକା ମୁହଁ
ତା' ଧଳା ଗୁଦର ତଳେ ଶୁଖିଥିବା କ୍ଷୀର କେତେ
ଅଣ୍ଡା ହୋଇ ଯାଇଥିବା ଉଷୁମର କେତେ ନାହିଁ—
କେତେ ଯେ ସେ ଅଜସ୍ର ସମସ୍ତ ।

ତୋ' ଆଖିର ଏଇ ତଳ
ମୋ ଆଖି ତଳରୁ ନଏ ଛଡ଼େଇ ଖେଳଣା କେତେ
କେତେ ଭଙ୍ଗା କଣ୍ଢେଇର ହାତ ଗୋଡ଼ ଭଙ୍ଗା ଚକ
କେତେ ସ୍ପ୍ରିଙ୍ଗ ପେଁକାଳି, ପୁଣି କେତେ ରଙ୍ଗର ଆଲୁଅ
ତୋ' ବୁଢ଼ୀ ମାଆର ଆଖିତଳରୁ ବି ଆଖି ମୋର
ଏମିତି ଛଡ଼ାଇ ଦିନେ ଆଣିଥିଲା କେତେ ଗପ କେତେ ଗୀତ
କେତେ ଯେ ଆକାଶ ତଳେ କେତେ ଘୁଡ଼ି ବେଲୁନ୍-ରେ
କେତେ ଲୁହ କେତେ ଡର କେତେ ବୁଢ଼ୀ ଅସୁରୁଣୀ ମୁହଁ,

ମୋ ବୋଉର ଆଖି ପରି ତୋ' ଆଖିର ଏ ଆକାଶ
ତୋ ଆଖିର କଳାଢେଉ, କିଳି ମେଘ, ନେଳି ପ୍ରଜାପତି
ଖରା ମେଘ ବସନ୍ତର ମହୁ ସବୁ ପିଇ ପିଇ
ପାରି ହୋଇ ପାଠପଢ଼ା, ହକି ଆଉ ଫୁଟ୍‌ବଲ
ପ୍ରେମ ଆଉ ଚିଠି ଲେଖା, ରୋଗ ଆଉ ଦାରିଦ୍ର୍ୟର ସବୁ କ୍ଷତ୍ରକ୍ଷତ
ତୋ ଆଖି ଆକାଶ ଆଉ ମୋ ବୋଉ ଆକାଶ ପରି
ପାରି ହୋଇ ମହାକାଶ, ମହାକାଳ, ସେ ମୃତ୍ୟୁର ଦୁର୍ନିବାର ଗତି ।

ଏ ଶୀତର ଏ କୁହୁଡ଼ି ବାଡ଼ି ଧରି ନଇଁ ନଇଁ
ପାହାଡ଼ ଉଠାଣି ଚଢ଼େ
ତା' ଧଳା ଗୁଦର ତଳେ, କେତେ ଗଛ କଣ୍ଟା କେତେ
କେତେ ବଣଜଙ୍ଗଲର ଫୁଲ
ଶିକାରୀ ବାଘର ନଖ କାମୁଡ଼ାର ଦାଗସବୁ
ତା' ଧଳା ଗୁଦର ତଳେ ପାଚିଲା ଧାନର ବାସ୍ନା
ଝିଂକାରିର ଝିଁ ଝିଁ
ବାଦୁଡ଼ି ଡେଣାର ଛାଇ
ଟକ୍ ଟକ୍ ତାରା କେତେ ତା ହାତର ଭାଙ୍ଗିଥିବା କାଚ ଗୁଣ୍ଡ ପରି,
ଏ ଶୀତର ଏ କୁହୁଡ଼ି ପାହାଡ଼ ଉଠାଣି ଚଢ଼ି, ଚାଲିଯିବ
ତୋ' ଆଖିର ଆକାଶ ସେପାରି
ମୋ ଆଖିର ମେଘ ଡେଇଁ ତୋ'ର ବୁଢ଼ୀମା ଯାଏ
ତୋ' ଆଖି ତାରାରୁ ଖସି
ଆଦିଗନ୍ତ ଆସମୁଦ୍ର ଆଜନ୍ମର ସମସ୍ତ ସେପାରି,
ଏ ଶୀତର ଏ କୁହୁଡ଼ି ମୋ ବୋଉ ତୋ' ବୁଢ଼ୀମାଆ—
ମୋ ବୁଢ଼ୀମାଆର ତମ
ଧଳା ଶାଲ ଗୁଦରର ଅସରନ୍ତି ଆକାଶ ଆକାଶ
ଆଜିଠାରୁ ତୋ'ଆଖିର ତାରାରେ ମୋ'ନିଜସ୍ୱ ହୁଏ, ମୋର ଜନ୍ମଜନ୍ମାନ୍ତର
ବସ୍ତୁ ଲୟ ବଳୟର ଇତିହାସ । ●

## ବାବା ପାଇଁ ଆଉ ଗୋଟିଏ କବିତା

ଆଜିଠାରୁ ତା ବାଟରେ ଫୁଲ ଝଡ଼ୁ ଝରି ଝଡ଼ୁ
ଚନ୍ଦନ ଓ ଝୁଣାର ବାସ୍ନାରେ

ତା' ବାଟରେ ମୁହଁ ସବୁ ହୋଇଯାଉ ନିଶ୍ଚିହ୍ନ ନୀରବ
ପଛରେ ତ ବାଟ ତାର ନର୍ଦ୍ଦମାକ୍ତ ଆବର୍ଜନାମୟ
ତା' ପାଦର ଚିହ୍ନ ସେଠି ନାହିଁ 'ମୋଟେ ଆଜି ଆଉ ନାହିଁ,
ତା' ଯିବାର ମୁହୂର୍ତ୍ତରେ ବର୍ଷା ଆଉ ଅପରିଚ୍ଛନ୍ନତା
ଚୁପ୍‌ଚୁପ୍ ତା ମୁହଁର ବିକୃତିର ନିଃସଙ୍ଗତା ନେଇ
ଆଖି ବୁଜି ତା' ଦୃଷ୍ଟିର ସେ ବା କଣ ଦେଖୁଥିଲା ?
ଅଦୃଷ୍ଟ ନିଷ୍ଠୁର ବହୁ ମୁହଁର ବିକୃତି ଅବା ?
କ୍ଳାନ୍ତି କ୍ଳାନ୍ତ କ୍ଲାନ୍ତ ଖାଲି — ବିରକ୍ତି ବା ପରିସମାପ୍ତିର ?
ଅବା ମୋ ଜେଜେର ମୁହଁ କଳାଧଳା ବାଙ୍କ ନିଶ
ଅତର ଓ ଗୁଣ୍ଡି ପାନ ବଙ୍କା ବାଡ଼ି, ରୂପା ପାନଡିବାର ସଉକ ?
ଅବା ତା ଦୃଷ୍ଟିରେ ଥିଲା ଦିଗନ୍ତ ଦିଗନ୍ତ ଖାଲି ?
ଅନନ୍ତ ଶୂନ୍ୟତା ଘେରି ହାହାକାର ?
ଅବା ମହାସୁପ୍ତିର ନିସ୍ତାର ?
ତୋ ଆଖିର ଡୋଳା ତଳେ ତା ମୁହଁର ଚମ ଆଉ ହାଡ଼
ତା ହସର ପାନବୋଳ, ତା ବାଳର ଧଳା ଖୋଠ ସବୁ
କେବେହେଲେ ପାଇନାହିଁ ଜୀବନ୍ୟାସ
ତେଣୁ ତୋର ଅସ୍ପଷ୍ଟ ସ୍ମୃତିରେ
ସାମ୍ନାର ସମସ୍ତ କେବେ ବ୍ୟତିବ୍ୟସ୍ତ ହେବ ନାହିଁ
ରାତିର କାକର ଅବା ଜିଦ୍‌ଖୋର ତୋ ଲୁହ ଭିତରେ
ସେ ବୁଢ଼ୀର ଚମ ହାଡ଼ ଶୀତ ଆଉ କୁହୁଡ଼ି ସ୍ମୃତିରେ
କେବେ ତ ଫେରିବ ନାହିଁ ତୋ ଫେରିବା ବାଟର କ୍ଲାନ୍ତିରେ ।
ତା ଆଖିର କୁହୁଡ଼ିର ତୃପ୍ତି ଆସୁ ତୋର ମନ ଘେରି

ତା ହସର ସେନ୍ହ ଆସୁ ତୋ ଦେହରେ ତାର ସବୁ ଆଶୀର୍ବାଦ ନେଇ
ସେ ଆଜ ଗଲାଣି ଫେରି କାଠଯୋଡ଼ି ବାଲି ଭିତରକୁ
ସେ ଆଜ ଗଲାଣି ଫେରି ସମୟକୁ ଏକ ମହା ପରିସମାପ୍ତିକୁ,
ତା ବାଟରେ ଫୁଲ ପଡ଼ୁ ବର୍ଷା ହେଉ ଚନ୍ଦନ ଓ ଝୁଣା
ଅଷ୍ଟାଷ୍ଟ ନଷ୍ଟ ଭ ଯେତେ ମୁହଁ ସବୁ ବିରକ୍ତିର
ଲେପ ପାଉ ଶୂନ୍ୟ ଆକାଶରେ
ଯାଯାବର ତା ଆତ୍ମାର ଗତ ହେଉ ତୋର ଗୀତ ପରି
ଅର୍ଥହୀନ ଉଲ୍ଲାସର ସାନ ସାନ ଅସରନ୍ତି ଢେଉ । ●

## ମୃତ୍ୟୁ

ମହାଶୟ,
କୌତୁହଳ ଠିକ୍ ନୁହେଁ...
ଏ ଦେହ ଓ ଦେହାନ୍ତର ସୀମା ଅବା
ଚେତନାର ପାଚେରି ସେପାଖେ
ସ୍କୁଲ ପିଲପରି ଫାଟକ ସେପାଖେ ଡେଇଁ
ଦେଖିବାର କୌତୁହଳ ନୁହେଁ ।
ଯେହେତୁ ମୁଁ ଠିକ୍ ଜାଣେ ଫେରିବାର ବାଟ ଏଠି ନାହିଁ
ଫେରିବାର ଏ ବାଟରେ ଅନ୍ଧାର କେବଳ ଫେରେ
ଯେହେତୁ ମୁଁ ଠିକ୍ ଜାଣେ ଫେରିବାର ଏ ବାଟରେ ଛାଇ ଅବା
ସ୍ମୃତି ଫେରେ ନାହିଁ
ଯେହେତୁ ମୁଁ ଠିକ୍ ଜାଣେ ଛାଇର ଦେହାନ୍ତ ନାହିଁ
ସମୟର ଛାୟାପାତ ନାହିଁ
ମହାଶୟ,
ସେ ମୃତ୍ୟୁରେ ଶୋଉଥିଲା ସେଦିନ ବର୍ଷାର
ଲୁହରେ ଶିଥିଳ ସିକ୍ତ ଶାଳ ବଣ
କଜଳପାତିର ପରି ଆକାଶର ଭୁହା ଭୁହା ଅସର୍ା ଅସରା

ବଞ୍ଚି ହୋଇ ଯାଉଥିଲା ସେଦିନ ସନ୍ଧ୍ୟାରେ
ଆପଣଙ୍କ ଦେହ ଆଉ ଦେହାନ୍ତର ସୀମାନ୍ତ ଉପରେ
ସେଦିନ ସୁନ୍ଦର ଏବଂ ଶାଳ ବଣ ଧାନ କ୍ଷେତ
ଆଷାଢ଼ର ମେଘ ପୃଥିବୀ
ଜୀବନରୁ ମୃତ୍ୟୁପାଇଁ ଗୀତ ।
ସେ ମୃତ୍ୟୁର ଶୋକଠାରୁ ବହୁଦୂର
ଏ ପୃଥିବୀ ଧୂସର ପାଣ୍ଡୁର···
ଅକସ୍ମାତ୍ ଆକାଶର ମହାଶୂନ୍ୟତାରେ
ପ୍ରାଚୀନ ସୂର୍ଯ୍ୟର ସ୍ୱର୍ଣ୍ଣ ବାତ୍ୟାରୁ ଏ ଛିଣ୍ଡି ଯିବା
ତାପରେ ଦଶ ବତାସ ନାଚର ରୋମାନ୍ସ ଧରି
ପାହାଡ଼ ଜଙ୍ଗଲ ମେଘ ଝରଣା ଓ ଏସବୁର
ପାଖୁଡ଼ା ପାଖୁଡ଼ା ଏବଂ ଝଡ଼ିଯିବା ଗୋଲାପ ଫୁଲର
ବିବର୍ଣ୍ଣ ମୁହୂର୍ତ୍ତର ମ୍ଳାନ ସ୍ୱପ୍ନ ନେଇ ଆକାଶର ଦେହରେ ଦେହରେ
ଏହି ତାରା ଛାୟାପଥ ମ୍ୟାଜିକ୍ ଲାଗି ଯାଇ
ଛାଇର ଦେହାନ୍ତ ପରେ ସମୟର ବାଟରେ ଫେରିବା ···
କିନ୍ତୁ ମହାଶୟ, ଗ୍ରହର ଦେହାନ୍ତ ନାହିଁ ସମୟର ଛାୟାପାତ ନାହିଁ ।
ମହାଶୟ, ଆଜି ତେଣୁ ଏ ମୃତ୍ୟୁରେ କୌତୁହଳ ନାହିଁ ।
ଆଶା ନାହିଁ ଇଚ୍ଛା ନାହିଁ—ପୁଣି ଏଠି ଫେରି ଆସି
ଏ ରାସ୍ତାର ବାରଲାଇଟ କାର ବସ ସ୍କୁଟର ଭିତରେ
ଝଡ଼ା ପତ୍ର ଗୀତହୋଇ ବହୁତଦେହର ବହୁସ୍ପନ୍ଦନରେ ମିଶିଯିବା ନାହିଁ ।
ଏ ମୃତ୍ୟୁ କେବଳ ଟିକ୍ ସହରର ସବୁ ଫ୍ୟୁଜ୍ ଅକସ୍ମାତ୍ ଜଳିଗଲା ପରି
ଏ ମୃତ୍ୟୁ ବା କାହାପାଇଁ ବୃକ୍ଷରୁ ଅକସ୍ମାତ୍ ଛୁଟି ଦେଲା ପରି ।
ମହାଶୟ !!!
ମୁଁ ଯଦି ପାରନ୍ତି ରଖି ଆପଣଙ୍କ 'ଅମୃତ' ଓ "ଶିଶିର"ର ଆଶା !! ●

## ସାହିତ୍ୟ-ସମାଲୋଚନା

ସ୍ୱାଧୀନତୋତ୍ତର ଓଡ଼ିଆ କାବ୍ୟ-ଇତିହାସରେ ପରିଦୃଷ୍ଟ ଗୋଟିଏ ଗମ୍ଭୀର ବ୍ୟଙ୍ଗପୂର୍ଣ୍ଣ ଘଟଣା ଏହି ଯେ ଯେଉଁ ଗୁରୁପ୍ରସାଦ କବିତାକୁ ମାନସିଂ 'ଆଲୋଚନା ବାହାରର ଦ୍ରବ୍ୟ', କହି ଉପେକ୍ଷା କରିଥିଲେ, ତା'ରି ସଂପର୍କରେ ବୋଧେ ( କବିତା ସଂଖ୍ୟା ଦୃଷ୍ଟିରୁ, ଆନୁପାତିକ ଭାବରେ ) ସବୁଠୁଁ ବେଶୀ ଆଲୋଚନା କରାଯାଇଛି । ତେବେ, ଏକାଧିକ ଆଲୋଚକଙ୍କ ଦ୍ୱାରା ବିଭିନ୍ନ ଦୃଷ୍ଟିକୋଣରୁ ଗୁରୁପ୍ରସାଦଙ୍କ କାବ୍ୟକୃତିର ସମାଲୋଚନା ତଥା ମୂଲ୍ୟାୟନ ଦିଗରେ ଏ ସଂକଳନ ପ୍ରଥମ ଉଦ୍ୟମ ।

ଏହାର 'ପ୍ରବନ୍ଧ, ଆଲୋଚନା ଓ ସମାଲୋଚନା' ବିଭାଗରେ ଗୁରୁପ୍ରସାଦଙ୍କ କାବ୍ୟକୃତିର ବିବିଧ ବିଭାବ ସଂପର୍କରେ ଆଲୋକପାତ କରିଛନ୍ତି କୃଷ୍ଣଚରଣ ସାହୁ, ତାରିଣୀ ଚରଣ ଦାସ, ସତ୍ୟଶଙ୍କର ମିଶ୍ର, ବିନୋଦ ବିହାରୀ ପଣ୍ଡା, ଶରତଚନ୍ଦ୍ର ଶତପଥୀ, ଗୋବିନ୍ଦ ଚନ୍ଦ୍ର ନାୟକ ଓ କୁମୁଦ ଚନ୍ଦ୍ର ଦାଶ । 'ଗୁରୁପ୍ରସାଦଙ୍କ କବିତା ଓ ମୁଁ' ବିଭାଗରେ ସ୍ୱକୀୟ, ବ୍ୟକ୍ତିଗତ ଦୃଷ୍ଟିକୋଣରୁ ଗୁରୁପ୍ରସାଦଙ୍କ କବିତା ପ୍ରତି ନିଜର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ଛଅ ଜଣ ସାଧନାରତ କବି : ବଂଶୀଧର ଷଡ଼ଙ୍ଗୀ, ପ୍ରଜ୍ଞାଜିତ ସତ୍ୟନାରାୟଣ ନନ୍ଦ, ନିତ୍ୟାନନ୍ଦ ପତି, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ନୀଳାଦ୍ରି ଭୂଷଣ ହରିଚନ୍ଦନ ଓ ଶତ୍ରୁଘ୍ନ ପାଣ୍ଡବ । ଏବଂ ସଙ୍କଳନର ତୃତୀୟ ବିଭାଗରେ ଗୁରୁପ୍ରସାଦଙ୍କ ପାଞ୍ଚୋଟି ସୁପରିଚିତ କବିତାର ବିଚାର ତଥା ଅନୁଶୀଳନ କରିଛନ୍ତି ରେଖା ମହାନ୍ତି, ସୌରୀନ୍ଦ୍ର ବାରିକ, ପ୍ରମୋଦ ମହାନ୍ତି, ପଞ୍ଚାନନ ମହାନ୍ତି, ବିଜୟ ଚୌଧୁରୀ

ଏ ସଂକଳନର ଆଉ ଏକ ବିଶିଷ୍ଟ ବିଭାବ ହୋଉଛି. ଗୁରୁପ୍ରସାଦଙ୍କ ସହ ସର୍ବ ପ୍ରଥମ ଆନୁଷ୍ଠାନିକ ସାକ୍ଷାତକାରର ପ୍ରକାଶନ । 'ସମୁଦ୍ରସ୍ନାନ' ସଂକଳିତ ହେଲାପରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଗୁରୁପ୍ରସାଦଙ୍କ ତିନୋଟି କବିତାର ପୁନଃମୁଦ୍ରଣ ମଧ୍ୟ ଏ ସଂକଳନର ଆଉ ଏକ ଆକର୍ଷଣ ।

ଏ ସଂକଳନର ସଂପାଦକ ପ୍ରଫୁଲ୍ଲ କୁମାର ଜଗଦ୍ଦେବ ସଂପ୍ରତି ଉତ୍କଳ ବିଶ୍ୱ-ବିଦ୍ୟାଳୟ, ଭୁବନେଶ୍ୱରରେ ଇଂରାଜୀ ଅଧ୍ୟାପକ । ଭୁବନେଶ୍ୱରରୁ ପ୍ରକାଶିତ ସାହିତ୍ୟ-ସମାଲୋଚନା ସାମୟିକୀ 'ମୂଲ୍ୟାୟନ' ଓ ଇଂରାଜୀ ସାହିତ୍ୟ-ପତ୍ର 'ମହାନଦୀ ରିଭ୍ୟୁ' ସେ ସଂପାଦନା କରନ୍ତି । ତାଙ୍କ ସଂପାଦନାରେ 'ସଚ୍ଚି-ରାଉତରାୟଙ୍କ କବିତା : ୧୯୩୧-୧୯୬୪' ଓ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କବିତା : ଏକ ପୁନର୍ମୂଲ୍ୟାୟନ' ନାମରେ ଦୁଇଟି ସମାଲୋଚନା ଗ୍ରନ୍ଥ ମଧ୍ୟ ପ୍ରକାଶିତ ।

**ମୂଲ୍ୟ : ଦଶ ଟଙ୍କା**